ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଠାର ଯତ୍ନ

ରୀଠା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ତୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଠା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀଠା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି.

ଭେଞ୍ଚୋ କୋ:, ବମ୍ବେ * କଲିକତା * ମାନ୍ଦ୍ରାଜ

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ

---

ଆଜି "ଜହ୍ନମାମୁଁ" ଅଷ୍ଟାଦଶ ବର୍ଷରେ ପଦାର୍ପଣ କଲା । ଏହି ଶୁଭ ଅବସରରେ ସେ ତା'ର ଅଗଣିତ ପାଠକ-ପାଠିକା ଓ ବିତରକମାନଙ୍କୁ ଅଭିବାଦନ ଜଣାଉଛି ଏବଂ ସେମାନଙ୍କ ଶୁଭେଚ୍ଛା କାମନା କରୁଛି । 'ଜହ୍ନମାମୁଁ' ସମେତ ସମସ୍ତଙ୍କ ଯାତ୍ରାପଥ ହେଉ ମଙ୍ଗଳମୟ ।

## ଅମରବାଣୀ

ଉପେକ୍ଷ୍ୟ ସମୟେ କାର୍ଯ୍ୟଂ, ଭଗ୍ନେଚିନ୍ତା ନିରର୍ଥକା ।
ନିର୍ଗତେ ସଲିଲେ ତତ୍ର ସେତୁ ବନ୍ଧୋ ନିରର୍ଥକଃ ॥

[ପାଣି ବହିଯିବା ପରେ ବନ୍ଧ ବାନ୍ଧିବା ଯେପରି ନିରର୍ଥକ, ଠିକ୍ ସମୟରେ କୌଣସି କାମ ନ କରିପାରିଥିବା ହେତୁ ପରେ ଚିନ୍ତା କରିବା ବି ସେହିପରି ନିରର୍ଥକ ।]

---

ବର୍ଷ : ୧୮     ଜୁଲାଇ ୧୯୮୪     ଅଙ୍କ : ୧

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



## ଜହ୍ନମାମୁଁ ସମ୍ବାଦ

### ଡିନୋସାର୍‌ର ଇତିକଥା




ପ୍ରାୟ ସାଢ଼େ ଛଅକୋଟି ବର୍ଷ ତଳେ ହଠାତ୍ ପୃଥିବୀର ଅଧିକାଂଶ ପ୍ରାଗୈତିହାସିକ ପ୍ରାଣୀ (ଡିନୋସର) ମାନେ ପ୍ରାଣ ହରାଇଲେ। କାହିଁକି ? ବର୍ତ୍ତମାନ କେତେକ ବୈଜ୍ଞାନିକ କହୁଛନ୍ତି କି ଗୋଟିଏ ଛୋଟିଆ ଜ୍ୟୋତିଷ୍କ ଭୂପୃଷ୍ଠରେ ଧକ୍କା ଦେବା ଫଳରେ ପୃଥିବୀ ବ୍ୟାପି ପ୍ରଳୟ ଘଟିଗଲା। ତାହାହିଁ ହେଲା ସେମାନଙ୍କ ବିଲୁପ୍ତିର କାରଣ।

### ପଶୁ ଉପରେ ପ୍ରଭୁତ୍ୱ

ଆଜିଯାଏ ଐତିହାସିକମାନେ କହୁଥିଲେ ଯେ ଖ୍ରୀଷ୍ଟପୂର୍ବ ଛଅହଜାର ବର୍ଷ ତଳେ ମଣିଷ ପ୍ରଥମେ ପଶୁକୁ ବଶ କରି କାମରେ ଲଗାଇବାକୁ ଶିଖିଲା। କିନ୍ତୁ ଲଣ୍ଡନ୍ ବିଶ୍ୱବିଦ୍ୟାଳୟର ପୁରାତତ୍ତ୍ୱବିଦ ପଲ୍ ବାନ ଏବେ ଦର୍ଶାଇଛନ୍ତି କି ମଣିଷ ପ୍ରାୟ ଏକଲକ୍ଷ ବର୍ଷ ହେଲା ପଶୁ (ବିଶେଷତଃ ଘୋଡ଼ା)କୁ ବଶ କରିବାକୁ ଶିଖିଲାଣି। ମଣିଷ ଜାତିର ଇତିହାସ ସମ୍ପର୍କରେ ଆମକୁ କେତେ କମ୍ ଜଣା ସତେ !





### ଆକାଶରେ ସ୍ୱସ୍ତିକ !

ହଜାର ହଜାର ବର୍ଷ ଧରି ହିନ୍ଦୁମାନଙ୍କ ପାଇଁ ସ୍ୱସ୍ତିକ ଏକ ଶୁଭ ଚିହ୍ନ ହୋଇ ଆସିଛି। ପ୍ରାଚୀନ ଗ୍ରୀସ୍‌ରେ ବି ଏହା ମଙ୍ଗଳକର ବୋଲି ଗୃହୀତ ହେଉଥିଲା। ଟେକ୍‌ସାସ୍‌ର ଦୁଇଜଣ ବୈଜ୍ଞାନିକ ଏବେ କହୁଛନ୍ତି କି ସୁଦୂର ଅତୀତରେ ଗୋଟିଏ ଧୂମକେତୁ ପୃଥିବୀର ଚୁମ୍ବକ-କ୍ଷେତ୍ର ଭିତର ଦେଇ ଗଲାବେଳେ ତାହାର ଲାଞ୍ଜ ପ୍ରଥମେ ସ୍ୱସ୍ତିକ ଚିହ୍ନ ରୂପେ ଆକାଶରେ ଦେଖା ଦେଇଥିଲା।

## ଜାଣନ୍ତି କି ?

୧. "ଅଭିଜ୍ଞାନ ଶକୁନ୍ତଲମ୍" ନାମକ ସଂସ୍କୃତ ନାଟକର ଲେଖକ କିଏ ?

୨. "ଇଲିଆଡ୍" ଏବଂ "ଓଡ଼ିସି" ନାମକ ଦୁଇ ମହାକାବ୍ୟର କବି କିଏ ?

୩. "ପାରାଡାଇଜ ଲଷ୍ଟ୍" ମହାକାବ୍ୟ କାହାର ରଚନା ?

୪. "ଅର୍ଥଶାସ୍ତ୍ର"ର ଲେଖକ କିଏ ?

୫. ସାହିତ୍ୟରେ ନୋବେଲ ପୁରସ୍କାର ପାଇଥିଲେ ଇଂଲଣ୍ଡର କେଉଁ ପ୍ରଧାନ ମନ୍ତ୍ରୀ ?

(୬୮ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ସୁନା ବୋକଚା

ବିକାଶ ଉତ୍ତରାଧିକାରୀ ସୂତ୍ରେ ବେଶ୍ କିଛି ଭଲ ଜମି ପାଇଥିଲା । ହେଲେ ଅଳସୁଆ ତ! ଯେଉଁମାନେ ଭାଗରେ ଚାଷ କରୁଥିଲେ, ସେମାନେ ଯେତିକି ଦେଉଥିଲେ, ସେତିକିରେ ତାକୁ ସନ୍ତୁଷ୍ଟ ରହିବାକୁ ପଡୁଥିଲା । କିଛି ଜମି ପଡ଼ିଆ ବି ପଡ଼ିଥିଲା ।

"ତମେ ପରା କହୁଥିଲ ଫଳ ବଗିଚା କରିବ, ନିଜେ ଚାଷ କରିବ? ଆଉ କେବେ?" ତା' ସ୍ତ୍ରୀ ମାଧୁରୀ ମଧ୍ୟେ ମଧ୍ୟେ ପଚାରେ ।

"କରନ୍ତି ଯେ, ହେଲେ ସେଥିରେ ଗୁଡ଼ାଏ ସମୟ ଯିବ!" କହେ ବିକାଶ ।

"ବର୍ତ୍ତମାନ ସମୟକୁ ନେଇ କେଉଁ ଭଲ କାମରେ ଲଗାଉଛ? ଗାଁର ଦୁଇ ତିନିଜଣ ଅକର୍ମା ଯୁବକଙ୍କ ସହ ଆଡ୍ଡା ଦେବାରେ, ନହେଲେ ପଶା ଖେଳିବାରେ, ନହେଲେ ଶୋଇବାରେ ତ ସବୁ ସମୟ ଖର୍ଚ୍ଚ କରୁଛ । ଚାଷରେ ତୁମର ସମୟ ଗଲେ କ୍ଷତି କ'ଣ ହୁଅନ୍ତା?"

"ଆଚ୍ଛା, କହିଲ, ଆମର ଚଳିବାରେ କ'ଣ ଅସୁବିଧା ହେଉଛି ଯେ ସେସବୁ କରିବା ଦରକାର?" ବିକାଶ ହନେ ପଚାରିଲା ।

ମାଧୁରୀ ଟିକିଏ ନୀରବ ରହି ତା'ପରେ କହିଲା, "ଅସୁବିଧା ଆଜି ହେଉନାହିଁ, କାଲି ହୋଇପାରେ । ତା'ପରେ ଅଳସୁଆ ରହିବା ଗୋଟାଏ ପାପ । ଆଉ..."

"ଆଉ କ'ଣ?"

"କିଛି ସୁନା ଗହଣା ପିନ୍ଧିବି ବୋଲି ସ୍ୱପ୍ନ ଦେଖିଥିଲି । ସେ ସ୍ୱପ୍ନ ସ୍ୱପ୍ନରେହିଁ ରହିଯିବ ବୋଲି ବର୍ତ୍ତମାନ ଜାଣିଛି ।" ମାଧୁରୀ ଆଖି ଛଳ ଛଳ କରି କହିଲା ।

ବିକାଶ ଚୁପ୍ ହୋଇଗଲା । ବାସ୍ତବିକ ସେ ମାଧୁରୀକୁ ସୁନା ଗହଣା ଗଢ଼ାଇ ଦେବ ବୋଲି



ପ୍ରତିଶ୍ରୁତି ଦେଇଥିଲା । ସେ ସୁନା ଗହଣା ପିନ୍ଧିଲେ ପଡ଼ୋଶୀ ମହଲରେ ବିକାଶରହିଁ ସମ୍ମାନ ବଢ଼ିଯା'ନ୍ତା । "ହଇରେ ରାମୁ, ଟଙ୍କା କେମିତି ଆସିବ କହିଲୁ ?" ବିକାଶ ତା'ର ଜଣେ ବନ୍ଧୁକୁ ପଚାରିଲା ।

"ବେପାର ବଣିଜ କର!" ରାମୁ କହିଲା ।

"ହେଉ, ସେସବୁ ପାଠରେ କିଏ ପଶିବ!" ବିକାଶ ତାଚ୍ଛଲ୍ୟ କରି କହିଲା ।

"ଓ, ତେବେ ଚୋରି କରିବୁ ?" ରାମୁ କହିଲା ଓ ଉଭୟେ ହସିଲେ । କିନ୍ତୁ କଥାଟା ବିକାଶ ମନକୁ ବେଶ୍ ପାଇଲା । ସେହି ପ୍ରଣାଳୀରେ ଧନୀ ହେବା ନିମନ୍ତେ ଚେଷ୍ଟା କରିବାକୁ ସେ ସିଦ୍ଧାନ୍ତ ନେଲା ।

ପରଦିନ ସେ ମାଧୁରୀକୁ କହିଲା, "ମୁଁ ଟିକିଏ ଦୂରକୁ ଯାଉଛି । ଗୁଡ଼ାଏ ଲୋକ ବାପାଙ୍କଠାରୁ ଟଙ୍କା କରଜ କରିଥିଲେ । ବାପାଙ୍କ ଅନ୍ତେ ସେମାନେ ସେ ଟଙ୍କା ଆଉ ଦେଉ ନାହାନ୍ତି । ଦେଖେଁ ଯଦି ଆଦାୟ କରି ପାରିବି ।"

ସେ ଚାଲି ଚାଲି ଯାଇ ଗୋଟାଏ ହାଟରେ ପହଞ୍ଚିଲା । ସେଠି ସେ ସମସ୍ତଙ୍କୁ ଲକ୍ଷ୍ୟ କରି ଦେଖୁଥାଏ—କିଏ ଧନୀ ଦିଶୁଛି ।

ଅବଶ୍ୟ ତାକୁ ଭୟ ବି ଲାଗୁଥାଏ । ଜୀବନରେ କେବେ ଯେଉଁ କାମ କରିନାହିଁ, ଆଜି ତାହା କରିବାକୁ ଯାଉଛି । କିନ୍ତୁ ନିଜକୁ ଦମ୍ଭ ଦେଉଥାଏ । "ଆରେ, ମୁଁ କ'ଣ କମ୍ ବୁଦ୍ଧିମାନ ? କେତେଥର କେତେ ଅଡୁଆ ଓ କଠିନ କାମ ହାତକୁ ନେଇ ତ ସଫଳ ହୋଇଛି, ଆଜି ଏ କାମରେ ସଫଳ ନ ହେବି କାହିଁକି ?" ସେ ମନେ ମନେ କହୁଥାଏ ।

ଖୁବ୍ ମୂଲ୍ୟବାନ ପୋଷାକ ପିନ୍ଧିଥିବା ଜଣେ ଭଦ୍ରଲୋକଙ୍କୁ ସେ ଅନୁଧାବନ କଲା । ତାଙ୍କ ପକେଟରେ ବେଶ୍ ମୋଟା ଟଙ୍କାଥିବ ବୋଲି ତା'ର ଧାରଣା ହେଲା । କିଛି ସମୟ ପରେ ସେ ଦେଖିଲା, ଭଦ୍ରଲୋକ ଆଉ ଜଣେ ଲୋକକୁ କହୁଛନ୍ତି, "ଭାଇ, ତମେ ମୋତେ ଗୋଟାଏ ଟଙ୍କା ଧାର ଦେଇ ପାରିବ ?" ବିକାଶ ହତାଶ ହୋଇ ତାଙ୍କ ପିଛା ଛାଡ଼ିଲା ।

ଆଉ ଜଣେ ମୋଟା ନିଶୁଆ ଲୋକଙ୍କ ପିଛା ନେଲା ଯେ ସେ ଏମିତି କଟମଟ କରି ଅନାଇଲେ ଯେ ବିକାଶ ଡରିଗଲା ।

ହଠାତ୍ ଚଷାଭଳି ଦିଶୁଥିବା ଜଣେ ଲୋକ ତା' ସ୍ତ୍ରୀକୁ କହୁଥିବାର ସେ ଶୁଣିଲା, "ସୁନା ବୋକଚ୍ଛାକୁ ସାବଧାନରେ ଧରିବ!"

ସୁନା ବୋକଚ୍ଛା! ଉପରକୁ ଏଡ଼େ ସାଧାରଣ ଦିଶୁଥିବା ଲୋକେ ପୁଣି ଏଡ଼େ ଧନୀ ହୋଇ ପାରନ୍ତି! ବିକାଶ ସେ ଦମ୍ପତିଙ୍କ ପିଛା ନେଲା । ସେମାନେ ହାଟରୁ ବାହାରି ଘରମୁହାଁ ଚାଲିଲେ । ବିକାଶ ବି ଅନୁସରଣ କଲା ।



ଯେତେବେଳେ ସେମାନେ ନିଜ ଘର ପିଣ୍ଡାକୁ ଉଠିଲେ, ବିକାଶ ସେମାନଙ୍କ ପାଖକୁ ଯାଇ କହିଲା, "ମୁଁ ଏ ଅଞ୍ଚଳରେ କାହାକୁ ଚିହ୍ନେ ନାହିଁ । ଏ ରାତିକ ଆପଣଙ୍କ ଘରେ ଆଶ୍ରା ପାଇବି ?"

"ନିଶ୍ଚୟ, ନିଶ୍ଚୟ!" ଗୃହସ୍ୱାମୀ କହିଲେ । ବିକାଶକୁ ସେମାନେ ଗୋଟାଏ କୋଠରି ଦେଖାଇ ଦେଲେ ଓ ରାତିରେ ଭଲ ଖାଇବାକୁ ଦେଲେ । ଶୋଇବାକୁ ଗଲାବେଳେ ବିକାଶ ଶୁଣିଲା, ପାଖ କୋଠରିରେ ଗୃହସ୍ୱାମୀ ତାଙ୍କ ସ୍ତ୍ରୀଙ୍କୁ କହୁଥିଲେ, "ସୁନା ବୋକଚ୍ଛା କେଉଁଠି ରଖିଲ ?"

"ସେଲ୍ଫ ଉପରେ!" ତାଙ୍କ ସ୍ତ୍ରୀ ଉତ୍ତର ଦେଲେ ।

ବିକାଶ ନିଦରେ ନ ଶୋଇ ଚିନ୍ତାରେ ପଡ଼ିଥାଏ । ଯେତେବେଳେ ରାତି ଆସି ଅଧାଅଧି ହେଲା, ସେ ଆସ୍ତେ ଆସ୍ତେ ନିଜ କୋଠରିରୁ ବାହାରକୁ ଗଲା ଓ ଅତି ସନ୍ତର୍ପଣରେ ପାଖ କୋଠରିର ଦ୍ୱାର ଠେଲିଲା । ଝରକା ଦେଇ ଜହ୍ନ ଆଲୁଅ ପଡ଼ିଥାଏ । ଗୋଟିଏ ଛୋଟିଆ ସେଲ୍ଫ ଉପରେ ବୋକଚ୍ଛାଟି ଥୁଆ ହୋଇଥିବାର ସେ ଦେଖିଲା ।

ଅତି ସତର୍କ ଭାବରେ ସେ ବୋକଚ୍ଛା ଉଠାଇ ନେଲା । ଅସରପାଟିଏ ତା' ହାତ ଉପରକୁ ଚଢ଼ିଗଲା । ଅସରପା ଦେଖିଲେ ସେ ସହଜେ ଚମକୁଥାଏ । ବର୍ତ୍ତମାନ ପୁଣି ସେ ଡରିଡରି ରହିଥାଏ । ଫଳରେ ତା' ହାତରୁ ବୋକଚ୍ଛା ଖସି ପଡ଼ିଲା ଓ ଗୋଡ଼ ବାଜି ସେଲ୍ଫଟି ଛିଟିକିଗଲା ।

"ଚୋର! ଚୋର!" ପାଟିକଲେ ଭଦ୍ର ମହିଳା। ତାଙ୍କ ସ୍ୱାମୀ ଡେଇଁ ପଡ଼ି ବିକାଶ ଆଡ଼କୁ ଝପଟି ଆସିଲେ।

"ତମେ ?" ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

ବିକାଶର ମୁଣ୍ଡକୁ ହଠାତ୍ ଗୋଟାଏ ବୁଦ୍ଧି ଆସିଗଲା। ସେ ହସିବାର ଛଳନା କରି କହିଲା, "ମୁଁ ତମମାନଙ୍କୁ ଟିକିଏ ଶିକ୍ଷା ଦେବାକୁ ଚାହୁଁଥିଲି। ସୁନା ବୋକଚା ଏମିତି ଖୋଲାଖୋଲି ଭାବରେ ରଖନ୍ତି? ଭାବିଥିଲି ଏହାକୁ ଲୁଚାଇ ଦେବି। ତମେମାନେ ବହୁତ ଖୋଜାଖୋଜି କଲେ ବାହାର କରି ଦେଇଦେବି। ତା'ହେଲେ ବୁଝିଥାନ୍ତ ଏମିତି ଭାବରେ ସୁନା ବୋକଚା ରଖିବା ନିରାପଦ ନୁହେଁ।"

ଗୃହସ୍ୱାମୀ ହସିଲେ ଓ କହିଲେ, "ସେଇଆ କୁହ! କାହିଁକି ନା ତମକୁ ଦେଖିଲେ ତମେ ଚୋର ହୋଇପାର ବୋଲି କିଏ କହିବ ଭଲା! ଶୁଣ, ଏ ବୋକଚାରେ ସୁନା ନାହିଁ କି ଆମ ଘର ଖୋଳି ଛାଡ଼ି ପକାଇଲେ ବି ତଳେ ସୁନା ମିଳିବ ନାହିଁ। ଆମେ ଅନ୍ୟର ଜମି ଚାଷ କରି କଷ୍ଟରେ ଚଳି ଆସିଛୁଁ। ଗତ ବର୍ଷ ମୁଁ ଖଣ୍ଡିଏ ଜମି କିଣିଲି। ଏଇ ବର୍ଷ ସେଥିରେ ଚାଷ କରିବା ପାଇଁ କିଛି ଭଲ ବିହନ କିଣିଛୁଁ। ମୁଁ ମୋ ସ୍ତ୍ରୀକୁ କହିଥିଲି କି ଭଲ ଫସଲ ହେଲେ ସୁନା ଗହଣା ଗଢ଼ାଇଦେବି। ଅର୍ଥାତ୍, ଏଥିରେ ଥିବା ଧାନତକ ସୁନା ପାଇଁ ବିହନ! ସେଥିପାଇଁ ଆମେ ଏହାକୁ ମଜାରେ ସୁନା ବୋକଚା ବୋଲି କହୁଥିଲୁଁ।"

"ଓ!" ବିକାଶ କୌଣସି ମତେ ଅପମାନ ଢୋକି କହିଲା।

ଭୋର ହେବା ମାତ୍ରେ ସେ ଘରମୁହାଁ ଚାଲିଲା। ସେହିଦିନଠୁଁ ସେ ଜମିରେ ମନୋନିବେଶ କଲା। ବାସ୍ତବିକ ବର୍ଷ ଦୁଇଟାରେ ତାହା ସୁନା ଥାଳିଆରେ ପରିଣତ ହେଲା।






[୧୩]

[ପିଙ୍ଗଳର ଦୁଇ ବଡ଼ଭାଇ ପିଙ୍ଗଳକୁ ଗୋଟାଏ ଜାହାଜର କପ୍ତାନକୁ ବିକ୍ରି କରିଦେବା ପରେ ସେ ଘରେ ଜମାକରି ରଖିଥିବା ସୁନା, ହୀରା ଇତ୍ୟାଦି ନିଜ ନିଜ ଭିତରେ ବାଣ୍ଟିନେଲେ । କିନ୍ତୁ ଯାଦୁଥଳି କିଏ ନେବ, ସେଇ ପ୍ରଶ୍ନ ଉପରେ ଦୁହିଁଙ୍କ ଭିତରେ ହେଲା ଭୀଷଣ ଝଗଡ଼ା । ରାଜାଙ୍କ ସିପାହୀମାନେ ତାଙ୍କୁ ଧରି ନେଲେ ଓ ରାଜା ସେ ଦୁହିଁଙ୍କୁ କାରାରୁଦ୍ଧ କଲେ । ତେଣେ ସମୁଦ୍ର ଭିତରେ କପ୍ତାନର ଜାହାଜ ସହ ଅନ୍ୟ ଏକ ଜାହାଜର ଯୁଦ୍ଧ ଲାଗିଯିବାରୁ କପ୍ତାନ କ୍ରୀତଦାସମାନଙ୍କୁ ମୁକ୍ତ ଦେଇ ସେମାନଙ୍କ ହାତରେ ଅସ୍ତ୍ର ଧରାଇ ଦେଲା । ତାପରେ—]

କପ୍ତାନର ଆଦେଶ ଅନୁସାରେ ସବୁ ଗୁଲାମଙ୍କୁ ମୁକ୍ତ ଦିଆଗଲା । ଶତ୍ରୁ ପକ୍ଷର ଆକ୍ରମଣରୁ ଜାହାଜକୁ ରକ୍ଷା କରିବା ନିମନ୍ତେ ସେମାନଙ୍କ ହାତରେ ଧନୁତୀର ଏବଂ ତରବାରି ମଧ୍ୟ ଦିଆଗଲା । କପ୍ତାନ ସେମାନଙ୍କୁ ଉଦ୍ଦେଶ୍ୟ କରି କହିଲା, "ଶୁଣ, ତମେମାନେ ଆଉ ଗୁଲାମ ହୋଇ ରହିନାହଁ, ବର୍ତ୍ତମାନ ସମସ୍ତେ ଯୋଦ୍ଧା । ବର୍ତ୍ତମାନ ଭୀଷଣ ବିପଦର ସମୟ । ଆମ ଜାହାଜକୁ କୌଣସି ଦୁଷ୍ଟ ଜାହାଜ ଆକ୍ରମଣ କରୁଛି । ଆମେ ଯଦି ହାରିଯିବା, ତେବେ ସମସ୍ତଙ୍କୁ ସାରା ଜୀବନ ଗୁଲାମ ବନି ରହିବାକୁ ପଡ଼ିବ । ଯଦି ଜିତିଯିବା, ତେବେ



ସ୍ୱାଧୀନ ଭାବରେ ଯାହା ଇଚ୍ଛା ତାହା କରିବା। ସାରା ଜୀବନ ଗୁଲାମ ବନି ରହିବା **ଅପେକ୍ଷା** ବରଂ ଅଳ୍ପ ସମୟ ପାଇଁ ହେଲେବି ସ୍ୱାଧୀନ ଭାବରେ ଜୀବନ ଧାରଣ ଶ୍ରେୟସ୍କର। ତେଣୁ ବର୍ତ୍ତମାନ ତମମାନଙ୍କୁ ଯଥାସାଧ୍ୟ ଲଢ଼େଇ କରିବାକୁ ହେବ। ପ୍ରାଣ ଗଲେ କିଛି ଯାଏ ଆସେ ନାହିଁ। ସମ୍ମୁଖ ଯୁଦ୍ଧରେ ଯିଏ ମରେ, ସିଏ ସ୍ୱର୍ଗକୁ ଯାଏ। ଏକଥା ମନେ ରଖିଥିବ। ତେବେ ଆମକୁ ମରିବାକୁ ହେବ ନାହିଁ। ଆମର ଜରୁର୍ ବିଜୟ ହେବ।"

କପ୍ତାନ ଏତିକି କହି ସେମାନଙ୍କ ହାତରେ ଅସ୍ତ୍ରଶସ୍ତ୍ର ଧରାଇ ଦେବାର ବ୍ୟବସ୍ଥା କଲା। "ଦେଖିଲ ତ? ତମକୁ ତମ ବୀରତ୍ୱ ଦେଖାଇବା ନିମନ୍ତେ ସୁଯୋଗ ଦେଲି। ବର୍ତ୍ତମାନ ତୁମ ଭିତରେ ଓ ଆମ ଭିତରେ କୌଣସି ପାର୍ଥକ୍ୟ ନାହିଁ।" ଏହା କହି କପ୍ତାନ ତା' ନିଜ ଅନୁଚରମାନଙ୍କୁ ନିର୍ଦ୍ଦେଶ ଦେବା ନିମନ୍ତେ ଜାହାଜର ଅନ୍ୟ ଦିଗକୁ ଚାଲିଗଲା।

କପ୍ତାନ ଚାଲିଯିବା ମାତ୍ରେ ଗୁଲାମମାନେ ନିଜ ନିଜ ଆଡ଼କୁ ଦୃଷ୍ଟିପାତ କଲେ। ସେମାନଙ୍କୁ ପଶୁଠାରୁ ବଳି ହୀନ ଅବସ୍ଥାରେ ରଖାଯାଇଥିଲା। ହଠାତ୍ ମୁକ୍ତି ପାଇ ଓ ହାତରେ ଅସ୍ତ୍ରଶସ୍ତ୍ର ଧରିବାର ସୁଯୋଗ ପାଇ ସେମାନେ ପୁଲକିତ ହେଲେ। କିନ୍ତୁ ସେମାନଙ୍କର ଏ ସ୍ୱାଧୀନତା କେତେ ସମୟ ରହିବ? ତାହାହିଁ ହେଲା ସେମାନଙ୍କ ମନରେ ପ୍ରଶ୍ନ।

"ପ୍ରସ୍ତୁତ ତ? ସମ୍ମୁଖ ଯୁଦ୍ଧରେ ଜିତାପଟ୍ଟ ହେଉ ବା ମୃତ୍ୟୁ ହେଉ, ସେଥିରେ ଗୌରବ ଅଛି।" କପ୍ତାନ ଲେଉଟି ଆସି ଗୁଲାମମାନଙ୍କୁ ଉଦ୍ଦେଶ୍ୟ କରି ପୁଣି କହିଲା।

କପ୍ତାନର ଏ ବକ୍ତୃତା ଉପରେ ଗୁଲାମମାନଙ୍କର ବିଶ୍ୱାସ ହେଲା ନାହିଁ। କପ୍ତାନ ସେମାନଙ୍କ ସହିତ କିପରି କ୍ରୂର ବ୍ୟବହାର କରିଥିଲା, ସେକଥା ସେମାନେ ଭୁଲି ନଥାନ୍ତି।

ପିଙ୍ଗଳ ଗୋଟିଏ ମୁହୂର୍ତ୍ତ ଭିତରେ ନିଜ କର୍ତ୍ତବ୍ୟ ସ୍ଥିର କରିନେଲା। ସେ ଅନ୍ୟ ଗୁଲାମମାନଙ୍କୁ କହିଲା, "ଭାଇମାନେ!



ଜାହାଜ ଯଦି ଜଳିଯିବ, ତେବେ ଆମେ ସମସ୍ତେ ମରିବୁଁ । କିନ୍ତୁ ଶତ୍ରୁ ପକ୍ଷ ହାରିଗଲେ ବି ଆମର ଲାଭ କ'ଣ ହେବ ? ଆମକୁ ଏ କପ୍ତାନ ପୁଣି ଗୁଲାମ କରି ଶୋଷଣ କଷ୍ଟ ଦେବ । ତେଣୁ ଆମକୁ ବର୍ତ୍ତମାନ ଦୁଇଟି କାମରେ ସାଫଲ୍ୟ ଅର୍ଜନ କରିବାକୁ ପଡିବ । କପ୍ତାନ ଓ ତା'ର ଅନୁଚରମାନଙ୍କୁ ହଟାଇବାକୁ ହେବ; ତା'ପରେ ବାହାର ଶତ୍ରୁ କବଳରୁ ଜାହାଜକୁ ରକ୍ଷା କରିବାକୁ ହେବ । ପ୍ରଥମେ ଜାହାଜ ରକ୍ଷା କରିବାକୁ ଯାଇ ଆମର ଶକ୍ତି ଖର୍ଚ୍ଚ କରିଦେଲେ ତା'ପରେ ଆଉ କପ୍ତାନ ବିରୁଦ୍ଧରେ କିଛି କରିହେବ ନାହିଁ । କ'ଣ କହୁଛ ?"

ସବୁ ବନ୍ଦୀମାନେ ପିଙ୍ଗଳ କଥାରେ ଏକମତ ହେଲେ ଓ କପ୍ତାନ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ପିଙ୍ଗଳକୁ ସେମାନେ ନେତା ବୋଲି ସ୍ୱୀକାର କଲେ ।

"ଚାଲ, କପ୍ତାନ ଓ ତା' ଲୋକଙ୍କୁ ଦେଖି-ନେବା ଚାଲ !" ଗର୍ଜନ କରି ପିଙ୍ଗଳ କହିଲା । ସଙ୍ଗେ ସଙ୍ଗେ ଗୁଲାମମାନେ କପ୍ତାନ ଓ ତା' ଲୋକଙ୍କ ଉପରକୁ ଝାମ୍ପି ପଡ଼ିଲେ ।

ଏଭଳି ପରିସ୍ଥିତି ହେବ ବୋଲି କପ୍ତାନ ସ୍ୱପ୍ନରେ ମଧ୍ୟ ଭାବି ନଥିଲା । ତେଣେ ଆକ୍ରମଣ-କାରୀ ଜାହାଜଠାରୁ ଆତ୍ମରକ୍ଷା କରିବାକୁ ଯାଇ ହଠାତ୍ ନିଜ ଜାହାଜ ଭିତରେ ପ୍ରବଳ ଶତ୍ରୁର ମୁକାବିଲା କରିବାକୁ ପଡିଲା !

"ଆରେ, ଆରେ, ଜାହାଜରେ ତ ବିଦ୍ରୋହ ହେଲାଣି ! କିଏ କୁଆଡ଼େ ଅଛ, ପ୍ରଥମେ ଏ ଗୁଲାମମାନଙ୍କୁ ଖତମ୍ କର !" କପ୍ତାନ ଚିତ୍କାର କରି ନିଜ ଲୋକଙ୍କୁ ନିର୍ଦ୍ଦେଶ ଦେଲା । ସଙ୍ଗେ ସଙ୍ଗେ ସେ ଗୁଲାମମାନଙ୍କୁ ନିଜେ ଆକ୍ରମଣ ମଧ୍ୟ କଲା । ତା'ର କ୍ଷିପ୍ର ଅସିଚାଳନାରେ ତିନିଜଣ ଗୁଲାମ ଟଳି ପଡ଼ିଲେ । ଅନ୍ୟ ଗୁଲାମମାନେ ଭୀତତ୍ରସ୍ତ ହେଲେ ।

କପ୍ତାନ ଗୋଟାଏ ରାକ୍ଷସ ଭଳି ଦିଶୁଥାଏ । ଗୁଲାମମାନେ ତାକୁ ଆକ୍ରମଣ କରିବାର ସାହସ କରିବେ, ଏହା ସେ ସହ୍ୟ କରିପାରୁ ନଥାଏ । ସେ ଗୁଲାମମାନଙ୍କୁ ଖାଲି ନିର୍ମମ ଭାବରେ

ନୁହେଁ, ଘୃଣା ସହକାରେ ମାରୁଥାଏ । ମୃତଦେହ ଗୁଡ଼ିକୁ ଗୋଡ଼ରେ ଠେଲି ଦେଉଥାଏ ।

ପିଙ୍ଗଳ ପ୍ରଚଣ୍ଡ ହୁଙ୍କାର ଦେଇ କପ୍ତାନ ଆଡ଼େ ମାଡ଼ି ଆସିଲା ଓ ସଙ୍ଗେ ସଙ୍ଗେ ଗୁଲାମମାନଙ୍କୁ କହିଲା, "ଭାଇମାନେ, ବର୍ତ୍ତମାନ ପଛଘୁଞ୍ଚା ଦେଲେ ସର୍ବନାଶ ହେବ । ଯିବ କୁଆଡ଼େ ? ସମୁଦ୍ର ତମ ପ୍ରାଣ ନେବ । ତେଣୁ ପ୍ରାଣମୂର୍ଚ୍ଛା ଲଢ଼ !"

ପିଙ୍ଗଳର ଏ ଚେତାବନୀ କାମ ଦେଲା । ଗୁଲାମମାନେ ସାହସ ସଞ୍ଚୟ କରି କପ୍ତାନର ଲୋକମାନଙ୍କୁ ଆକ୍ରମଣ କଲେ । ପିଙ୍ଗଳ ନିର୍ଭୟରେ କପ୍ତାନକୁ ଆହ୍ୱାନ ଦେଇ ତା' ସାମ୍‌ନାରେ ଛିଡ଼ା ହେଲା ।

କପ୍ତାନର ମୁହଁରେ ଆତଙ୍କ ଫୁଟି ଉଠିଲା । ଥରେ ଅନ୍ୟ ଜାହାଜ ଆଡ଼େ ଚାହିଁ ତା'ପରେ ପିଙ୍ଗଳକୁ ଆକ୍ରମଣ କଲା ।

କପ୍ତାନର ଅସି ଚାଳନା ତଥା ତାକତ୍ ଦେଖି ପିଙ୍ଗଳ ଆଶ୍ଚର୍ଯ୍ୟ ହେଲା । ସେ ବୁଝି ପାରିଲା ଯେ ପ୍ରତ୍ୟକ୍ଷ ଯୁଦ୍ଧରେ କପ୍ତାନ୍‌କୁ ହରାଇବା ସହଜ ନୁହେଁ । ସେ ତେଣୁ ହଠାତ୍ କପ୍ତାନ୍ ସାମନାରୁ ହଟିଗଲା । କପ୍ତାନ୍ ତା' ଆଡ଼େ ଝପଟି ଆସିବା ବେଳେ ଗୋଡ଼ରେ ଖଣ୍ଡିଏ ଦଉଡ଼ି ଛନ୍ଦି ଯିବାରୁ ତଳେ ପଡ଼ିଗଲା । ପିଙ୍ଗଳ ଦେଖିଲା ଏହା ସୁବର୍ଣ୍ଣ ସୁଯୋଗ । ସେ ବୁଲିପଡ଼ି ତରବାରି ଦ୍ୱାରା କପ୍ତାନକୁ ଆଘାତ କରିବା ପାଇଁ ଚେଷ୍ଟା କଲା । କପ୍ତାନ୍ ଚଟ୍‌କରି ଘୁଞ୍ଚିଗଲା । ଫଳରେ ପିଙ୍ଗଳର ତରବାରି



ଟହାଣ ଉପରେ ପଡିଲା ଓ ଦୁଇଖଣ୍ଡ ହୋଇଗଲା ।

କପ୍ତାନ ବିକଟ ଅଟ୍ଟହାସ୍ୟ କଲା ।

"ଆରେ ଗୁଲାମ ଟୋକା ! ତୁ ଭାବିଥିଲୁ ବିଦ୍ରୋହ କରିବା ବଡ଼ ସହଜ ! କେଡ଼େ ସହଳ ଅନ୍ୟ ଗୁଲାମମାନଙ୍କୁ ମତେଇ ଦେଲୁ ! କିନ୍ତୁ ବର୍ତ୍ତମାନ କ'ଣ ହେବ ? ମୋ ହାତରେ ମରିବୁ । ତା'ପରେ ? ନେତାଙ୍କ ବିନା ଅନ୍ୟ ଗୁଲାମମାନେ କରିବେ କ'ଣ ? ହାଃ ହାଃ ! ସେମାନେ ବି ମରିବେ । ନେତାଙ୍କୁ ଅନୁସରଣ କରି ଜଣେ ଜଣେ ପୃଥିବୀରୁ ବିଦାୟ ନେବେ !"

କପ୍ତାନ ପିଙ୍ଗଳର ତରବାରି ଭାଙ୍ଗିଯିବାରୁ ଏଡ଼େ ଖୁସି ହୋଇଯାଇଥିଲା ଯେ ପିଙ୍ଗଳ କ'ଣ କରୁଛି ସେଆଡ଼େ ତା'ର ଦୃଷ୍ଟି ନଥିଲା । ପିଙ୍ଗଳ ଏଣେତେଣେ ଅନାଇ ଦେଖିଲା, ହଠାତ୍ ଅନ୍ୟ ଗୋଟାଏ ତରବାରି ସଗ୍ରହ କରିବାର ସମ୍ଭାବନା ନାହିଁ । ଅନ୍ୟ ଗୁଲାମ-ମାନେ ସେତେବେଳେ କପ୍ତାନର ଅନୁଚର-ମାନଙ୍କ ସହ ଘମାଘୋଟ ଲଢୁଥାନ୍ତି ।

ପିଙ୍ଗଳ ତଳେ ପଡ଼ିଥିବା ମୋଟା ଦଉଡି ଖଣ୍ଡିକ ଉଠାଇ ନେଇ ତାହାର ଗୋଟାଏ ପ୍ରାନ୍ତରେ ଫାସ ପ୍ରସ୍ତୁତ କରି ତାକୁ ଉଦ୍ୟତ କରି ରଖିଲା । କ୍ରୋଧାନ୍ଧ କପ୍ତାନ୍ ଯେମିତି ଠିକଏ ପାଖକୁ ଆସିଛି, ସେମିତି ପିଙ୍ଗଳ ତା ବେକକୁ ଲକ୍ଷ୍ୟ କରି ଫାସଟି ଫୋପାଡ଼ିଲା । ଫାସ ଯାଇ ତା' ମୁଣ୍ଡ ଦେଇ ଗଳିଯାଇ ବେକରେ ଲାଗିଗଲା । ସଙ୍ଗେ ସଙ୍ଗେ ପିଙ୍ଗଳ ପଛମୁହାଁ ବୁଲିପଡ଼ି ଦଉଡ଼ି ଟାଣି ଅଗ୍ରସର ହେବାକୁ ଲାଗିଲା ।





କଠା ଗଛ ଭଳି କପ୍ତାନ୍ ତଳେ କଗୃଡ଼ ପଡ଼ିଲା । କିନ୍ତୁ ସଙ୍ଗେ ସଙ୍ଗେ ନିଜ ତରବାରି ଦ୍ୱାରା ସେ ଦଉଡ଼ି କାଟିବାକୁ ପ୍ରସ୍ତୁତ ହେଲା । ଦୁଇଜଣ ଗୁଲାମ ତାହା ଦେଖି ପକାଇ ତା' ଆଡ଼କୁ ଦୌଡ଼ି ଆସିଲେ । ସେମାନଙ୍କ ଆକ୍ରମଣରେ ମୁହୂର୍ତ୍ତକ ଭିତରେ କପ୍ତାନ ଇହଲୀଳା ସାଙ୍ଗ କଲା ।

ଏଣେ କପ୍ତାନ ସହ ଯୁଝିବାରେ ବ୍ୟସ୍ତ ଥାଇ ଜାହାଜର ଅନ୍ୟ ଦିଗରେ କ'ଣ ହେଉଛି, ପିଙ୍ଗଳ ସେକଥା ଜାଣି ନଥିଲା । ଏଥର ସେ ସେଆଡ଼େ ଦୃଷ୍ଟି ଦେଲା । ଦେଖିଲା, କପ୍ତାନର ଦସ୍ୟୁ ଅନୁଚରମାନେ ସମସ୍ତ ମଲେଣି ବା ବନ୍ଦୀ ହେଲେଣି । ତେଣେ ଅନ୍ୟ ଜାହାଜର ଲୋକେ ବୁଝି ଯାଇଥିଲେ ଯେ ଏ ଜାହାଜରେ କିଛି ଗଣ୍ଡଗୋଳ ହୋଇଛି । ସେମାନେ ତେଣୁ ଆକ୍ରମଣ କରିବାରୁ କ୍ଷାନ୍ତ ହୋଇ ଧିରେ ଧିରେ ନିଜ ଜାହାଜ ଏ ଜାହାଜ ପାଖକୁ ନେଇ ଆସୁଥିଲେ ।

ପିଙ୍ଗଳ ଆଗରେ ଦେଖାଦେଲା ନୂଆ ସମସ୍ୟା । ସେ ଶତ୍ରୁ ଜାହାଜ ସହିତ ଲଢ଼ିବ ନା ଆତ୍ମସମର୍ପଣ କରିବ ? ଆତ୍ମ-ସମର୍ପଣ କଲେ ପୁଣି ସେମାନଙ୍କ ଗୁଲାମ ବନି ରହିବାକୁ ପଡ଼ିପାରେ । ଯୁଦ୍ଧ କଲେ ସେମାନଙ୍କ ହାତରେ ପରାସ୍ତ ହେବାର ସମ୍ଭାବନା ଅଧିକ । ଯାହାହେଉ, ସେ କପ୍ତାନ୍‌ର ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସେ ଜାହାଜରେ କେତେ ଲୋକ ଅଛନ୍ତି ତାହା ଠଉରାଇବାର ଚେଷ୍ଟା କଲା । ଦେଖିଲା, ଲୋକ ବାସ୍ତବିକ ବହୁତ ।

ଯୁଦ୍ଧ ନକରି ସନ୍ଧିର ସୂଚନା ଦେଇ ଯଦି ସେମାନଙ୍କୁ ଏଡ଼ାଇ ଯିବା ସମ୍ଭବ ହେବ, ତାହାହିଁ ସବୁଠାରୁ ଉତ୍ତମ ହେବ ବୋଲି ପିଙ୍ଗଳ ସିଦ୍ଧାନ୍ତ କଲା । ତା' ନିର୍ଦ୍ଦେଶରେ ଗୁଲାମମାନେ ଜାହାଜର ମାସ୍ତୁଲ୍ ଉପରେ ଧଳା ପତାକା ଉଡ଼ାଇ ଦେଲେ । ସଙ୍ଗେ ସଙ୍ଗେ ଅନ୍ୟ ଜାହାଜରୁ ଜୟଧ୍ୱନି ଶୁଣାଗଲା ।

ପିଙ୍ଗଳ ମୁହଁରେ ତୁଙ୍ଗା ଦେଇ ସେମାନଙ୍କୁ ଉଦ୍ଦେଶ୍ୟ କରି କହିଲା, "ଭାଇମାନେ, ପ୍ରଥମେ ଏ ଜାହାଜ ତରଫରୁ ଆପଣଙ୍କ ଜାହାଜ ଉପରେ ଆକ୍ରମଣ ପାଇଁ ଯେଉଁ ଉଦ୍ୟମ




ହୋଇଥିଲା, ତାହା ସହ ଆମର କୌଣସି ସମ୍ପର୍କ ନାହିଁ । ଆମକୁ ଏ ଜାହାଜର ଦୁଷ୍ଟ କପ୍ତାନ୍ ବନ୍ଦୀ କରି କୁଆଡ଼େ ବିକି କରିଦେବ ବୋଲି ନେଇ ଯାଉଥିଲା । ଆମେ ସେ ଦୁଷ୍ଟ ଓ ତା' ଅନୁଚରମାନଙ୍କ କବଳରୁ ମୁକ୍ତ ପାଇଛୁଁ । ବର୍ତ୍ତମାନ ଆମର ଉଦ୍ଦେଶ୍ୟ ହେଲା ଏ ଜାହାଜକୁ କୌଣସି ନିକଟବର୍ତ୍ତୀ ବନ୍ଦରକୁ ନେଇଯିବା । ସେଠାରୁ ଆମେ ଯିଏ ଯାହା ଘରକୁ ଲେଉଟି ଯିବା । ଆପଣ ଆମକୁ ମିତ୍ର ରୂପେ ଦେଖନ୍ତୁ ଓ ନିଜ ବାଟରେ ଯାଆନ୍ତୁ ।"

ପିଙ୍ଗଳର ବାର୍ତ୍ତା ପାଇବା ପରେ ସେ ଜାହାଜ ଭିତରେ କିଛି ଆଲୋଚନା ହେଉଥିବାର ଜଣା ପଡ଼ିଲା । ତା'ପରେ ସବୁ ଚୁପ୍‌ଚାପ୍ ହୋଇଗଲା ଏବଂ କର୍କଶ କଣ୍ଠରେ କେହି ଜଣେ କହିଲା, "ତମେମାନେ ଗୁଲାମ୍ । ସ୍ୱାଧୀନ ଭାବରେ ଗୋଟାଏ ଜାହାଜ ଧରି ଯୁଆଡ଼େ ଇଚ୍ଛା ସିଆଡ଼େ ଚାଲିଯିବାର ଅଧିକାର ତମର ଆସିଲା କୁଆଡୁ ? ତମେମାନେ ତମ କପ୍ତାନ ଓ ତା' ଲୋକଙ୍କୁ ହତ୍ୟା କରି ଭୀଷଣ ଅପରାଧ କରିଛ । ଆଜି ତମେ ଗୁଲାମମାନେ ଯାହା କଲ, କାଲି ଆମ ଜାହାଜର ଗୁଲାମ-ମାନେ ଯଦି ସେଇଆ କରିବେ ? ନା, ତମମାନଙ୍କୁ ଛାଡ଼ି ଦିଆଯାଇ ପାରିବ ନାହିଁ । ଚୁପ୍‌ଚାପ୍ ଆତ୍ମସମର୍ପଣ କର ।"

ପିଙ୍ଗଳ ସନ୍ତ୍ରସ୍ତ ହେଲା । ସେ ବୁଝିଲା ଯେ ସେ ଜାହାଜ ବି ଗୋଟାଏ ଦସ୍ୟୁ ଜାହାଜ । ସେମାନଙ୍କ ଅଧୀନତା ସ୍ୱୀକାର କରିବାର ଅର୍ଥ ପୁଣି ଗୁଲାମ୍ ବନିଯିବା ।

ସେ ତା' ନିଜ ଅନୁଚରମାନଙ୍କୁ ଅବସ୍ଥା ବୁଝାଇଦେଲା । ସେମାନେ ସମସ୍ୱରରେ କହିଲେ କି ସେମାନେ ଲଢ଼େଇ କରି ମୃତ୍ୟୁ ବରଣ କରିବାକୁ ପ୍ରସ୍ତୁତ । ପୁଣି ଗୋଟାଏ ଦସ୍ୟୁ ଦଳର ଗୁଲାମ ବନି ଆଜୀବନ କଷ୍ଟ ଓ ଲାଂଛନା ପାଇବା ଅପେକ୍ଷା ବର୍ତ୍ତମାନ ଯୁଦ୍ଧ କରି, ନ ପାରିଲେ ସମୁଦ୍ରକୁ ଡେଇଁ ପଡ଼ି ମରିବା ଭଲ ।

ପିଙ୍ଗଳ ସେମାନଙ୍କ ସହ ଏକମତ ହେଲା । ସଂଖ୍ୟାରେ ତା' ଲୋକ କମ । ତେଣୁ ହାତାହାତି ଯୁଦ୍ଧ କରି ଦୂରରୁ ତୀର ବର୍ଷା କରି

ଯେତେପର୍ଯ୍ୟନ୍ତ ଶତ୍ରୁମାନଙ୍କୁ ଏଡ଼ାଇ ରଖାଯାଇ ପାରେ, ସେତେ ପର୍ଯ୍ୟନ୍ତ ଭଲ ବୋଲି ସେ ବିଚାର କଲା ।

ଧଳା ପତାକା ଖସାଇ ଅଣାଗଲା ଓ ତୀର ବର୍ଷା ଆରମ୍ଭ ହେଲା । ପିଙ୍ଗଳର ନିର୍ଦ୍ଦେଶ କ୍ରମେ ଅନୁଚରମାନେ ଜାହାଜକୁ ଅଳ୍ପ ଅଳ୍ପ ଦୂରେଇ ନେବାକୁ ଚେଷ୍ଟା କଲେ । କିନ୍ତୁ ଶତ୍ରୁ ଜାହାଜ ଗତି ବଢାଇ ସେମାନଙ୍କ ଜାହାଜ ପାଖକୁ ଭିଡ଼ି ହୋଇ ଆସିଲା । ପିଙ୍ଗଳ ବୁଝିଲା ଯେ ମୁହାଁମୁହିଁ ଲଢ଼େଇ ଛଡ଼ା ଅନ୍ୟ ଗତି ନାହିଁ ।

ହଠାତ୍ ତା' ମୁଣ୍ଡକୁ ଗୋଟାଏ ଧାରଣା ଆସିଲା : ଯଦି ମରିବାକୁ ହେବ, ତେବେ କୌଣସି ଦୁଃସାହସିକ କାମ କରି ମରିବା ନାହିଁ କାହିଁକି ? ଏହା ଭାବି ସେ ନିଜ ଅନୁଚରମାନଙ୍କୁ କହିଲା, "ଭୟ ନାହିଁ । ଆମର ହୁଏତ ବିଜୟ ହେବ, ନହେଲେ ବୀରଜନୋଚିତ ମୃତ୍ୟୁ ହେବ । ଗୋଟାଏ କାମ କର । ଆମ ଜାହାଜକୁ ଯେତେ ପ୍ରବଳ ଗତିରେ ସମ୍ଭବ ସେତେ ପ୍ରବଳ ଗତିରେ ନେଇ ଶତ୍ରୁ ଜାହାଜ ଦେହରେ ଧକ୍କା ଦିଅ ।"

ସମସ୍ତେ ସେ ନିର୍ଦ୍ଦେଶ ପାଳନ କରିବାରେ ଲାଗି ପଡ଼ିଲେ । ପିଙ୍ଗଳର ଜାହାଜ ହଠାତ୍ ଗତି ବଢ଼ାଇ ଅଗ୍ରସର ହେବାର ଦେଖି ଦସ୍ୟୁ ଜାହାଜର ଲୋକେ ପ୍ରଥମେ ଆଶ୍ଚର୍ଯ୍ୟ ହେଲେ । ତା'ପରେ ଏମାନଙ୍କ ମତଲବ ବୁଝିପାରି ଆତଙ୍କରେ କୋଳାହଳ କଲେ । କିନ୍ତୁ ଆଉ ଜାହାଜ ଦୂରେଇ ନେବା ପାଇଁ ସମୟ ନଥିଲା । ବଜ୍ର ଧ୍ୱନି ଭଳି ଶବ୍ଦ ସହକାରେ ପିଙ୍ଗଳର ଜାହାଜ ସେମାନଙ୍କୁ ଧକ୍କା ଦେଲା । ଆକାଶ ପବନରେ ପ୍ରତିଧ୍ୱନିତ ହେଲା ଆର୍ତ୍ତରବ ।

ପିଙ୍ଗଳ ନିଜେ ସେ ପ୍ରଚଣ୍ଡ କମ୍ପନରେ ସମୁଦ୍ର ଭିତରକୁ ଛିଟିକି ପଡ଼ିଲା—ସତେ ଅବା କେହି ତାକୁ ଉପରକୁ ଟେକି ଅଥଳ ପାଣି ଭିତରକୁ ଫୋପାଡ଼ି ଦେଲା ! (କ୍ରମଶଃ)






# ସିଦ୍ଧି ଓ ବୁଦ୍ଧି

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ବଜ୍ରଧ୍ୱନିର ମଝିରେ ମଝିରେ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ ତଥା ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନ କରି ପୁନର୍ବାର ବୃକ୍ଷାରୋହଣ କଲେ ଓ ଶବଟିକୁ ଉତାରି ଆଣିଲେ । ତା'ପରେ ଶବଟିକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ କେଉଁ ସିଦ୍ଧି ଲାଭ ଆଶାରେ ଏ କଠିନ କାମ ହାତକୁ ନେଇଛ ଜାଣେନା । ଜାଣିରଖ, ମନ୍ତ୍ରତନ୍ତ୍ରରେ ସିଦ୍ଧି ଲାଭ ଯେ ସର୍ବଦା ମଙ୍ଗଳକର, ସେକଥା ନୁହେଁ । ତମକୁ

**ବେତାଳ କଥା**



ଗୋଟିଏ ଘଟଣା କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ବୈଶାଳୀ ନଗରୀରେ ସୁରଶର୍ମା ନାମକ ଜଣେ ବ୍ରାହ୍ମଣ ଥିଲେ । ସେ ପୁରୋହିତ କାମ କରି ସୁରୁଖୁରୁରେ ଚଳି ଯାଉଥିଲେ । ସାଧାରଣ ପୁରୋହିତମାନଙ୍କ ତୁଳନାରେ ତାଙ୍କର ଶାସ୍ତ୍ର ଜ୍ଞାନରେ ବହୁତ ଅଧିକ ପାରଦର୍ଶିତା ଥିଲା । ନିଜ ଜ୍ଞାନଗରିମା ତୁଳନାରେ ସେ ଯେପରି ସମ୍ମାନ ପାଇବା କଥା, ସେପରି ପାଉ ନଥିବାରୁ ମନେ ମନେ ତାଙ୍କର କ୍ଷୋଭ ଥିଲା । ଯେତେବେଳେ ସେ ଦେଖୁଥିଲେ ରାଜଦରବାରରେ ଥିବା ପଣ୍ଡିତ, ଜ୍ୟୋତିଷ ଓ ପୁରୋହିତମାନେ ନାନା ପୁରସ୍କାର ଓ ଉପାଧିରେ ଭୂଷିତ ହେଉଛନ୍ତି, ସେତେବେଳେ ତାଙ୍କ କ୍ଷୋଭ ବଢ଼ି ଯାଉଥିଲା ।

ସୁରଶର୍ମାଙ୍କର ଏକମାତ୍ର ପୁତ୍ର କୃଷ୍ଣଶର୍ମା ମଧ୍ୟ ମନଯୋଗ ସହକାରେ ଅଧ୍ୟୟନ କରି ଜଣେ କୃତୀ ପଣ୍ଡିତ ରୂପେ ବେଦ-ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲେ । ତେଣିକି ସେ ପିତାଙ୍କ କାମରେ ସାହାଯ୍ୟ କରିବାକୁ ଲାଗିଲେ । ସୁରଶର୍ମା ଦେଖିଲେ, ପୁରୋହିତ ରୂପେ ଯେପରି କାର୍ଯ୍ୟ ତୁଲାଇବା କଥା, କୃଷ୍ଣଶର୍ମା ତାହା ସୁରୁଖୁରୁ ରୂପେ ତୁଲାଇ ପାରୁଛନ୍ତି । ସେ ନିଜେ କିଛିଦିନ ନିମନ୍ତେ ବାହାରକୁ ଗଲେ ପରିବାରର କୌଣସି ଅସୁବିଧା ହେବ ନାହିଁ ।

ସେ ତୀର୍ଥଯାତ୍ରା କରିବାକୁ ଯାଉଛନ୍ତି କହି ଘରୁ ବାହାରିଗଲେ ଓ କିଛିଦିନ ପରେ ହିମାଳୟ ପର୍ବତଦେଶରେ ପହଞ୍ଚିଲେ । ସାହସ ସଞ୍ଚୟ କରି ସେ ପ୍ରାୟ ମାସେକାଳ ପର୍ବତର ଦୁର୍ଗମ ଅଞ୍ଚଳମାନ ବୁଲିବୁଲି କରି ଦିନେ ଜଣେ ସିଦ୍ଧ ଯୋଗୀଙ୍କର ସନ୍ଧାନ ପାଇଲେ ।

ସୁରଶର୍ମା ସେ ଯୋଗୀଙ୍କ ପାଖରେ ରହି ତାଙ୍କର ସେବା କରିବାକୁ ଲାଗିଲେ । କେତେମାସ ବିତିଗଲା । ଦିନେ ଯୋଗୀ କହିଲେ, "ବ୍ରାହ୍ମଣ ! ତମର ଘରସଂସାର ରହିଛି । ତମେ ଯେ ବୈରାଗ୍ୟ ଯୋଗୁଁ ତାହା ଛାଡି ଆସିଛ, ମୋର ସେପରି ମନେ ହେଉ ନାହିଁ । କୌଣସି କାମନା ନେଇ ଆସିଛ । ବରଂ ମୁଁ



ତମକୁ କିଛୁ ବିଦ୍ୟା ଶିଖାଇ ଦେଉଛୁ, ଯାହା ଦ୍ୱାରା ତମର କାମନା ପୂର୍ଣ୍ଣ ହେବ । ତମେ ଘରକୁ ଫେରିଯାଅ ।"

"ମହାଭାଗ! ଆପଣ ମୋ ମନକଥା ବୁଝି ପାରିଛନ୍ତି । ସମାଜରେ ପ୍ରତିଷ୍ଠା ଓ ଐଶ୍ୱର୍ଯ୍ୟ ପାଇଁ ମୋର କାମନା ଅଛି । ମୋତେ ଏପରି କିଛି ସିଦ୍ଧି ଦିଅନ୍ତୁ, ଯାହା ଦ୍ୱାରା ସେ କାମନା ପୂର୍ଣ୍ଣ ହେବ ।" ସୁରଶର୍ମା କରଯୋଡ଼ି ହୋଇ କହିଲେ ।

"ବ୍ରାହ୍ମଣ! ତମେ ସେଭଳି କାମନା ଜୟ କରି ପାରିଥିଲେ ଭଲ ହୋଇଥାନ୍ତା । ସେ ଯାହାହେଉ, ମୁଁ ଗୋଟିଏ ମନ୍ତ୍ର ଶିଖାଇ ଦେଉଛୁ । ମରୁଡ଼ି ବେଳେ ସେ ମନ୍ତ୍ର ପଢ଼ି ବର୍ଷା କରାଇ ପାରିବ; ଯଥେଷ୍ଟ ବର୍ଷା ହୋଇଯିବା ପରେ ପୁଣି ବର୍ଷା ବନ୍ଦ ବି କରି ପାରିବ । ଏହା ତମକୁ ବଳେ ବଳେ ପ୍ରତିଷ୍ଠା ଓ ଐଶ୍ୱର୍ଯ୍ୟ ଆଣିଦେବ । କିନ୍ତୁ ସାବଧାନ! ଲୋଭର ବଶବର୍ତ୍ତୀ ହୋଇ ବାସ୍ତବ ପରିସ୍ଥିତି ପ୍ରତି ଅନ୍ଧ ହେବ ନାହିଁ !"

ବ୍ରାହ୍ମଣ ଅତ୍ୟନ୍ତ ଖୁସି ହୋଇଗଲେ । ସେ କହିଲେ, "ଆପଣ ତ ସବୁ ବୁଝି ପାରୁଛନ୍ତି । ଆପଣଙ୍କୁ ବା କ'ଣ କହିବି ? ମୋତେ ସେଭଳି କିଛି ମନ୍ତ୍ର ଶିଖାଇଦେଲେ ମୁଁ ଆଜୀବନ କୃତଜ୍ଞ ରହିବି ।"

"ବେଶ୍ । କିନ୍ତୁ ମୋ ସତର୍କବାଣୀ ଭୁଲିଗଲେ ଚଳିବ ନାହିଁ । ଲୋଭୀ ହେଲେ କଥା ସରିଲା!" ଯୋଗୀ ଆଉ ଥରେ କହିଦେଲେ ।

ଏହା କହି ଯୋଗୀ ମନ୍ତ୍ର ଶିଖାଇଦେଲେ ।

ସୁରଶର୍ମା ଅନେକଦିନ ପରେ ଘରକୁ ଫେରି ଆସି ଦେଖନ୍ତି ତ ତାଙ୍କର ରାଜ୍ୟରେହିଁ ମରୁଡ଼ି ପଡ଼ିଛି । ରାଜା ଅନେକ ଲୋକଙ୍କ କଥା ଶୁଣି ଅନେକ ପ୍ରକାର ପୂଜାନୁଷ୍ଠାନ କଲେଣି, କିନ୍ତୁ ବର୍ଷା ହେଉନାହିଁ । କେହି କୌଣସି ଅଲୌକିକ ଶକ୍ତି ଦ୍ୱାରା ବର୍ଷା କରାଇଦେଇ ପାରିଲେ ରାଜା ତାଙ୍କୁ ପ୍ରଚୁର ପୁରସ୍କାର ଦେବେ ବୋଲି ଘୋଷଣା କରିଛନ୍ତି !

ସୁରଶର୍ମା କୃଷ୍ଣଶର୍ମାଙ୍କୁ କହିଲେ, "ବନ୍ଧୁ! ମୁଁ ଏପରି ମନ୍ତ୍ର ଶିଖି ଆସିଛି ଯାହା ଦ୍ୱାରା

ଇଚ୍ଛା ମାତ୍ରେ ବର୍ଷା କରାଇଦେଇ ପାରିବ। ତୁ ବି ମନ୍ତ୍ରଟି ଶିଖି ନେ। ଉତ୍ତର ଦିଗକୁ ମୁହଁ କରି ଗୋଟାଏ ଗୋଡ଼ରେ ଠିଆ ହୋଇ ତିନିଥର ମନ୍ତ୍ର ପଢ଼ିଲେ ବର୍ଷା ହେବ। ପୁଣି ଏକା ପଦ୍ଧତିରେ ବର୍ଷା ବନ୍ଦ ବି ହୋଇଯିବ।"

ସୁରଶର୍ମା ମନ୍ତ୍ରଟି ପୁଅକୁ ଶିଖାଇ ଦେବା ମାତ୍ରେ ପୁଅ କହିଲେ, "ବାପା, ଆଉ ବିଳମ୍ବ କାହିଁକି? ଯଥାବିଧି ଠିଆ ହୋଇ ମନ୍ତ୍ରପାଠ କରି ରାଜ୍ୟବାସୀଙ୍କୁ ମରୁଡ଼ିର କରାଳକବଳରୁ ରକ୍ଷା କର!"

"ତୁ ଏମିତି ନିର୍ବୋଧ ଭଳି କ'ଣ କଥା କହୁଛୁ? ମୁଁ ଏଠି ମନ୍ତ୍ର ପଢ଼ି ବର୍ଷା କରାଇ-ଦେଲେ ରାଜା ଏ କାମ ମୋ ଦ୍ୱାରା ହେଲା ବୋଲି କିପରି ଜାଣିବେ? ରାଜ୍ୟର ସିନା ହିତ ହୋଇଯିବ, ଆମର କ'ଣ ଲାଭ ହେବ? ରାଜାଙ୍କୁ ଜଣାଇ ବର୍ଷା କରାଇଲେ ସିନା ପୁରସ୍କାର ମିଳିବ!"

ଏହା କହି ସୁରଶର୍ମା ଯାଇ ରାଜାଙ୍କ ପାଖରେ ପହଞ୍ଚିଲେ ଓ ସେ ବର୍ଷା କରାଇଦେଇ ପାରିବେ ବୋଲି ଘୋଷଣା କଲେ। ରାଜା ଯେ ତାଙ୍କୁ ସଙ୍ଗେ ସଙ୍ଗେ ବିଶ୍ୱାସ କଲେ, ତାହା ନୁହେଁ, ତେବେ କହିଲେ, "ମହାଶୟ, ଆପଣ ଯଦି ସେଭଳି ଅଲୌକିକ ଘଟଣା ଘଟାଇ ପାରିବେ, ତେବେ ଆପଣଙ୍କୁ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବି। ପୁଣି ଦରବାରରେ ବିଶେଷ ସମ୍ମାନ ବି ଦିଆଯିବ।"

"ବେଶ୍। ମୁଁ ଘଣ୍ଟାକ ଭିତରେ ଆପଣଙ୍କୁ ମୋ କୃତିତ୍ୱ ଦେଖାଇବି।" ଏହା କହି



ସୁରଶର୍ମା ନଗରୀ ବାହାରେ ଥିବା ଗୋଟିଏ ପରିତ୍ୟକ୍ତ ମନ୍ଦିର ପାଖକୁ ଗଲେ । ତାଙ୍କୁ ଅନୁଧାବନ କଲେ ରାଜାଙ୍କର ଜଣେ ଅମାତ୍ୟ ।

ମନ୍ଦିର ପାଖରେ ଥିବା ପୁଷ୍କରଣୀରେ ସ୍ନାନ କରି ସୁରଶର୍ମା ଗୋଟାଏ ଗୋଡ଼ରେ ଛିଡ଼ା ହୋଇ ଉତ୍ତର ଦିଗକୁ ମୁହଁ କରି ତିନିଥର ମନ୍ତ୍ର ବୋଲିବା ମାତ୍ରେ ଆକାଶ ଘନ ମେଘମାଳରେ ଆବୃତ ହେବାର ଦେଖାଗଲା । ପରେ ପରେ ବର୍ଷା ଆରମ୍ଭ ହେଲା । ଅମାତ୍ୟ ଦୌଡ଼ି ଦୌଡ଼ି ଯାଇ ରାଜାଙ୍କ ପାଖରେ ପହଞ୍ଚିଲେ । ନଗରୀର ଲୋକେ ରାସ୍ତାକୁ ବାହାରି ଆସି ଆନନ୍ଦରେ ବର୍ଷାରେ ଭିଜୁଥାନ୍ତି । ରାଜା ଓ ପାତ୍ର ମିତ୍ର ବି ରାସ୍ତାକୁ ବାହାରି ଆସିଲେ । ଅମାତ୍ୟ ସେମାନଙ୍କୁ ସେ ପରିତ୍ୟକ୍ତ ମନ୍ଦିର ପାଖକୁ ନେଇଗଲେ । ରାଜା ସେଠାରେ ପହଞ୍ଚି ସୁରଶର୍ମାଙ୍କୁ ଜୁହାର ହେଲେ । ସାଙ୍ଗରେ ସେ ଆଣିଥିଲେ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା । ତାଙ୍କୁ ତାହା ସାନନ୍ଦେ ଅର୍ପଣ କରି କହିଲେ, "ମହାଶୟ, ବର୍ଷା ଏମିତି ହେଉଥାଉ । ଯେତେବେଳେ ବନ୍ଦ କରିବା କଥା, ସେତେ-ବେଳେ ଆପଣଙ୍କ ପାଖକୁ ଖବର ଦେବି ।"

"ମହାରାଜ! ମୁଁ ଏଇଠି ଥିବି!" ସୁରଶର୍ମା କହିଲେ ।

ରାଜା ଓ ପାତ୍ରମିତ୍ର ଚାଲିଯିବା ଉତ୍ତାରୁ ସୁରଶର୍ମା ମନ୍ଦିର ଭିତରେ ପ୍ରବେଶ କରି ପ୍ରବଳ ଆଗ୍ରହରେ ସ୍ୱର୍ଣ୍ଣମୁଦ୍ରା ଗଣିବାକୁ ଆରମ୍ଭ କଲେ ।

ନଗରୀ ବ୍ୟାପି ଲୋକଙ୍କ ଆନନ୍ଦ କଥା କହିଲେ ନସରେ । ଅଧିକାଂଶ ଲୋକ ରାସ୍ତାକୁ





ବାହାର ବର୍ଷାରେ ଭିଜୁଥାନ୍ତି । ବ୍ରାହ୍ମଣଙ୍କୁ ଧନ୍ୟ ଧନ୍ୟ କହୁଥାନ୍ତି ।

ତିନିଘଣ୍ଟା ଅବିରତ ବର୍ଷା ପରେ ରାଜା ବର୍ଷା ବନ୍ଦ କରିବା ନିମନ୍ତେ ଅନୁରୋଧ କରି କେତେଜଣ ଅମାତ୍ୟଙ୍କୁ ପଠାଇଲେ । କିନ୍ତୁ ସେମାନେ ଆସି ଦେଖିଲେ କ'ଣ ? ସୁର-ଶର୍ମାଙ୍କୁ କେହି ହତ୍ୟା କରିଛି ! ସ୍ୱର୍ଣ୍ଣମୁଦ୍ରାଥଳି ନାହିଁ । ସେ ପରିତ୍ୟକ୍ତ ମନ୍ଦିର ପୂର୍ବରୁ ଡାକୁମାନଙ୍କ ଗୋପନ ଆଶ୍ରୟ ହୋଇଥିବା ଅସମ୍ଭବ ନଥିଲା ।

ରାଜା ଏ ସମ୍ବାଦ ପାଇ ମର୍ମାହତ ହେଲେ । ତେଣେ ବର୍ଷା କିପରି ବନ୍ଦ ହେବ, ସେ ପାଇଁ ସେ ଭୀଷଣ ଚିନ୍ତାରେ ପଡ଼ିଲେ । ଯାହାହେଉ, ସୁରଶର୍ମାଙ୍କ ମୃତ୍ୟୁ ସମ୍ବାଦ ନେଇ ରାଜାଙ୍କ ମନ୍ତ୍ରୀ କୃଷ୍ଣଶର୍ମାଙ୍କ ପାଖକୁ ଗଲେ ।

କୃଷ୍ଣଶର୍ମା ଦୁଃଖରେ ଭାଙ୍ଗି ପଡିଲେ । ମନ୍ତ୍ରୀ ତା'ପରେ କହିଲେ, ଆତତାୟୀଙ୍କ ହାତରେ ତୁମ ପିତାଙ୍କ ମୃତ୍ୟୁ ଗଭୀର ଦୁଃଖଦାୟକ ଘଟଣା । କିନ୍ତୁ ସଙ୍ଗେ ସଙ୍ଗେ ଆଉ ଏକ ଦୁଃଖର କଥା ହେଲା, ଯଦି ଆଉ ଘଣ୍ଟାଏ ଦୁଇଘଣ୍ଟା ଭିତରେ ଏ ପ୍ରବଳ ବର୍ଷା ବନ୍ଦ ନ ହୁଏ, ତେବେ ଆମ ସମସ୍ତଙ୍କ ଅବସ୍ଥା ବିପନ୍ନ ହେବ ।

"ଭଗବାନଙ୍କୁ ପ୍ରାର୍ଥନା କରିବା ଛଡ଼ା ଆଉ ଗତି କ'ଣ ?" କୃଷ୍ଣଶର୍ମା କହିଲେ ।

ଏହାପରେ ସେ ଉତ୍ତର ଦିଗକୁ ମୁହଁ କରି ଗୋଟାଏ ଗୋଡ଼ରେ ଛିଡ଼ା ହୋଇ ବାପା ଶିଖାଇଥିବା ମନ୍ତ୍ରଟି ପଢ଼ିଲେ ।

ମନ୍ତ୍ରୀ ଭାବିଲେ, ସେ ସାଧାରଣ ଭାବରେ ପ୍ରାର୍ଥନାହିଁ କରୁଛନ୍ତି । ମନ୍ତ୍ରୀ ବିଦାୟ ନେଇ ଚାଲିଗଲେ । ବର୍ଷା ବନ୍ଦ ହେଲା । କୃଷ୍ଣଶର୍ମାଙ୍କ ମନ୍ତ୍ରପାଠ ଯୋଗୁଁ ଯେ ବର୍ଷା ବନ୍ଦ ହେଲା, ସେକଥା କେହି ବୁଝିପାରିଲେ ନାହିଁ ।

ବେତାଳ ଟିକିଏ ନୀରବ ରହି କଣ୍ଠସ୍ୱର ତୀବ୍ର କରି ପଚାରିଲା, "ରାଜା! ମୋର ଗୋଟିଏ ସନ୍ଦେହ ଅଛି । ସୁରଶର୍ମାଙ୍କ ଭଳି ଚତୁର ବ୍ୟକ୍ତିଙ୍କ ପୁଅ ହୋଇ କୃଷ୍ଣଶର୍ମା ଏତେ ନିର୍ବୋଧ ହେଲେ କିପରି? ମନ୍ତ୍ରୀଙ୍କୁ ଯଦି ସେ କହିଥାନ୍ତେ ଯେ ବର୍ଷା ବନ୍ଦ କରିବା ମନ୍ତ୍ର ସେ ଜାଣିଛନ୍ତି, ତେବେ ତ ମନ୍ତ୍ରୀ ତାଙ୍କର

ଯୋଗୁଁ ବର୍ଷା ବନ୍ଦ ହେଲା ବୋଲି ବୁଝିଥାନ୍ତେ ଓ ତାଙ୍କୁ ପୁରସ୍କାର ଦେବାର ବ୍ୟବସ୍ଥା କରିଥାନ୍ତେ । ସେ ତାହା ନ କଲେ କାହିଁକି? ପିତାଙ୍କ ଭଳି ଆତତାୟୀମାନଙ୍କ ଦ୍ୱାରା ନିହତ ହେବାର ଆଶଙ୍କା ଯୋଗୁଁ ? ରାଜା, ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥାଇ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: "କୃଷ୍ଣଶର୍ମା ନିର୍ବୋଧ ନଥିଲେ: ସେ ତାଙ୍କ ପିତାଙ୍କ ତୁଳନାରେ ବହୁତ ଜ୍ଞାନୀ ଥିଲେ । ଯେତେବେଳେ ତାଙ୍କ ପିତା ବର୍ଷା ମନ୍ତ୍ର ଜାଣିଥିବା କଥା ସେ ଶୁଣିଲେ, ରାଜାଙ୍କ ପୁରସ୍କାର ଘୋଷଣା ପ୍ରତି ଖାତିର ନକରି ତତ୍କ୍ଷଣାତ୍ ସେ ମନ୍ତ୍ରଟି ପଢ଼ି ବର୍ଷା କରାଇବାକୁ ପିତାଙ୍କୁ କହିଥିଲେ । କିନ୍ତୁ ସୁରଶର୍ମା ନିଜକୁ ବଡ଼ ଚତୁର ମନେ କରୁଥିବାରୁ ପୁଅକୁ ନିର୍ବୋଧ କହିଥିଲେ । ସୁରଶର୍ମା ଘରକୁ ଆସି ସ୍ୱର୍ଣ୍ଣମୁଦ୍ରା ଗଣନା କରିପାରିଥାନ୍ତେ । କିନ୍ତୁ ସେ ଏଡ଼େ କାଣ୍ଡଜ୍ଞାନଶୂନ୍ୟ ଯେ ସେହି ପରିତ୍ୟକ୍ତ ମନ୍ଦିର ଭିତରେ ସଙ୍ଗେ ସଙ୍ଗେ ମୁଦ୍ରାଗଣନା ଆରମ୍ଭ କରିଦେଇ ଡାକୁମାନଙ୍କ କବଳରେ ପଡ଼ିଲେ । ତାଙ୍କର ସିଦ୍ଧି ଥିଲା; ବୁଦ୍ଧି ନଥିଲା ।

ଐଶ୍ୱର୍ଯ୍ୟ ଓ ପ୍ରତିଷ୍ଠା ପ୍ରତି କୃଷ୍ଣଶର୍ମାଙ୍କର କୌଣସି ମୋହ ନଥିଲା । ତେଣୁ ସେ ମନ୍ତ୍ର ଦ୍ୱାରା ବର୍ଷା ବନ୍ଦ କରୁଛନ୍ତି ବୋଲି ମନ୍ତ୍ରୀଙ୍କୁ ଜଣାଇଲେ ନାହିଁ । ପୁରୋହିତ ଭାବରେ ନିଜ ଉପାର୍ଜନରେ ସେ ଚଳି ଯାଉଥିଲେ । ସେ ଲୋଭୀ ନ ଥିଲେ, ଥିଲେ ସଂଯତ ଏବଂ ସାଧୁ । ଭୟ ଯୋଗୁଁ ନୁହେଁ ନିରାସକ୍ତି ଯୋଗୁଁ ସେ ନିଜ ମନ୍ତ୍ରଜ୍ଞାନ କଥା ମନ୍ତ୍ରୀଙ୍କୁ କହିଲେ ନାହିଁ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ହୁସିଆର ବୈଦ୍ୟ

ଆମ ଗାଁର ବୈଦ୍ୟ ଥରେ ନିଜ ଝିଅ ବାହାଘର ବିଷୟରେ କଥାବାର୍ତ୍ତା କରିବା ନିମନ୍ତେ ଗୋଟାଏ ଦୂର ଗାଁକୁ ଯାଇଥାନ୍ତି । ଦୈବାତ୍ ନିଜ ଗାଁରୁ ଆସିଥିବା ଜଣେ ଲୋକ ସହ ଦେଖା ହୋଇଗଲା । ବୈଦ୍ୟ ଶୁଣିଲେ କି ତାଙ୍କ ଗାଁ ଜମିଦାର ଅସୁସ୍ଥ ।

ବୈଦ୍ୟ ତତ୍କ୍ଷଣାତ୍ ନିଜ ଗାଁ ଅଭିମୁଖେ ଫେରିଲେ । ନଈ କୂଳରେ ପହଞ୍ଚି ଦେଖିଲେ ଡଙ୍ଗାବାଲା ଆଉ କେହି ପାରିହେବା ଲୋକ ନଥିବାରୁ ସେ ପାରିକୁ ଡଙ୍ଗା ନେବାକୁ ମଙ୍ଗୁନାହିଁ । ତେଣୁ ସେ ତିନିଗୁଣ ପଇସା ଦେଇ ନଈ ପାରିହେଲେ । ତା'ପରେ ଧାଇଁ ଧାଇଁ ଗଳଦ୍‌ଘର୍ମ ହୋଇ ଜମିଦାରଙ୍କ ଘରେ ପହଞ୍ଚିଲେ ଓ ଜମିଦାରଙ୍କୁ ଔଷଧ ଦେଲେ ।

ଜଣେ ତାଙ୍କ ପ୍ରଶଂସା କରି କହିଲେ, "ଆରେ ଭାଇ, ରୋଗୀ ପାଇଁ ତିନିଗୁଣ ପଇସା ଦେଇ ନଈ ପାରିହୋଇ ଆସିବା ବୈଦ୍ୟ କେଇଜଣ ଥିବେ ?"

ଆଉ ଜଣେ କହିଲେ, "ପୁଣି କେମିତି ଧଇଁସଇଁ ହୋଇ ଆସିଲେ ଦେଖିଲଟି ?"

ରାତିରେ ବୈଦ୍ୟଙ୍କ ଶଳା ତାଙ୍କୁ ଏସବୁ ଖବର ଦେବାରୁ ବୈଦ୍ୟ ହସି ହସି କହିଲେ, "କଥା କ'ଣ କି, ପୂର୍ବରୁ ଦୁଇଥର ଜମିଦାର ଅସୁସ୍ଥ ହେବାର ଖବର ପାଇ ମୁଁ ଧୀରେ ସୁସ୍ଥେ ଆସି ପହଞ୍ଚି ଦେଖେଁ ତ ସେ ବିନା ଔଷଧରେ ସୁସ୍ଥ ହୋଇ ଗଲେଣି । ତେଣୁ ଏଥର ତରତର ହୋଇ ନ ଆସି ଉପାୟ କ'ଣ ଥିଲା ?"






# ପରୀକ୍ଷା

ଦେବନଗରରେ ଶିବଦାସ ନାମକ ଜଣେ ବଡ଼ ଭକ୍ତ ରହୁଥା'ନ୍ତି । ସେ ପାଖ ଗାଁମାନଙ୍କରେ ବୁଲି ବୁଲି ଭଗବାନଙ୍କ ମହିମା କୀର୍ତ୍ତନ କରୁଥା'ନ୍ତି । ଦିନେ ସେ ରାମନଗର ନାମକ ସ୍ଥାନରେ ଏକ ଧର୍ମସଭାରେ ବକ୍ତୃତା ଦେଇ କହିଲେ : "ଈଶ୍ୱର ଯେଉଁ ପ୍ରାଣୀଙ୍କୁ ସୃଷ୍ଟି କରନ୍ତି ତା' ପାଇଁ ଆଗରୁ ଆହାର ମଧ୍ୟ ରଖିଥା'ନ୍ତି । ମା' ଗର୍ଭରୁ ଶିଶୁ ଜନ୍ମହେବା ମାତ୍ରେ ମା' ପାଖରୁ ପ୍ରଥମେ ଦୁଗ୍ଧପାନ କରେ । କ୍ଷୁଦ୍ର ପିମ୍ପୁଡ଼ିଟିଏ ମଧ୍ୟ କ'ଣ ଖାଇବ ସେକଥା ସେ ବୁଝନ୍ତି । କୌଣସି ପ୍ରାଣୀ ଆହାର ବିନା ନଷ୍ଟ ହୋଇଯିବାକୁ ସେ ପସନ୍ଦ କରନ୍ତି ନାହିଁ । ପ୍ରତ୍ୟେକ ପ୍ରାଣୀକୁ କୌଣସି ନା କୌଣସି ଉପାୟରେ ସେ ଖୁଆଇଥା'ନ୍ତି ।"

ସଭାସ୍ଥ ଲୋକମାନେ ଅତି ଆଗ୍ରହରେ ତାଙ୍କ କଥା ଶୁଣୁଥା'ନ୍ତି । ଶ୍ରଦ୍ଧା ଓ ବିଶ୍ୱାସର ସହିତ ଶୁଣିବା ଦ୍ୱାରା ଖୁବ୍ ଆନନ୍ଦ ପାଉଥା'ନ୍ତି । କିନ୍ତୁ ଶ୍ରୋତାମାନଙ୍କ ମଧ୍ୟରୁ ସୁଦର୍ଶନ ନାମକ ବ୍ୟକ୍ତି ଉଠିପଡ଼ି ପ୍ରଶ୍ନକଲା, "ଆଚ୍ଛା, ଯିଏ ଜିଦ୍ କରି ଖାଇବ ନାହିଁ, ତାକୁ ବି କ'ଣ ଈଶ୍ୱର ଖୁଆଇ ଦେବେ ?"

"ଈଶ୍ୱରଙ୍କ ପାଇଁ ସେଇଟା କିଛି ବଡ଼ କଥା ନୁହେଁ । ସେ ଚାହିଁଲେ ତାକୁ ମଧ୍ୟ ଖୁଆଇ ପାରିବେ । ଯେତେ ପ୍ରକାର ଚେଷ୍ଟା କଲେ ମଧ୍ୟ ଶେଷରେ ଈଶ୍ୱରଙ୍କରହିଁ ଜୟ ହେବ । ଅବଶ୍ୟ ଈଶ୍ୱର ଚାହିଁବେ କି ନା ତାହା ଭିନ୍ନ କଥା । କିନ୍ତୁ ତାଙ୍କ ଇଚ୍ଛା ଭାଙ୍ଗିବ କିଏ ?"

ସୁଦର୍ଶନ ବହୁତ ଜିଦିଖୋର ଲୋକ ଥିଲା । ସେ ଏକଥାର ପ୍ରତ୍ୟକ୍ଷ ପ୍ରମାଣ ଚାହିଁଲା । ସେଥିପାଇଁ ସେଦିନ ଖାଇବନାହିଁ ବୋଲି ମନସ୍ଥ କଲା ଓ ଭାବିଲା, "ଦେଖିବି ମୋତେ ଈଶ୍ୱର କିମିତି ଖୁଆଇ ଦେବେ ।"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ସେ ଘରେ ପହଞ୍ଚିବା ମାତ୍ରେ ତା' ସ୍ତ୍ରୀ ଖାଦ୍ୟ ସବୁ ସଜାଡ଼ି ରଖି ତାକୁ ଖାଇବା ପାଇଁ ଡ଼ାକିଲା ।

"ମୋତେ ଭୋକ ଲାଗୁନାହିଁ । ମୁଁ ଖାଇବି ନାହିଁ ।" ଟିକେ ରାଗିକରି ସୁଦର୍ଶନ କହିଲା ।

ସ୍ତ୍ରୀ ପୁଣି ଅନୁରୋଧ କରି କହିଲା, "ତୁମେ ଭଲ ପାଉଥିବା ସବୁ ତରକାରି ଆଜି କରା ହୋଇଛି । ଅଳ୍ପ ଖାଇନିଅ ।"

"କହିଲି ପରା, ଭୋକ କରୁନାହିଁ! ଏତେ ଜିଦ୍ କାହିଁକି କରୁଛ?" ସୁଦର୍ଶନ ରାଗିକରି କହିଲା ।

ପିଲାମାନେ ମଧ୍ୟ ଖାଇବାକୁ ଯିବା ପୂର୍ବରୁ ବାପାଙ୍କୁ ଡ଼ାକିଲେ । ବିରକ୍ତ ହୋଇ ସୁଦର୍ଶନ ସେଠାରୁ ଉଠି ବାହାରକୁ ପଳାଇଲା । ରାତିକ ଘରେ ରହିଲେ ତା'ର ସର୍ତ୍ତ ନଷ୍ଟ ହୋଇଯିବ ।

ଗାଁ ମୁଣ୍ଡରେ ଥିବା ଏକ ବରଗଛ ତଳେ ଯାଇ ସେ ବସିଲା । ରାତିକ ଦିନଟି ଏଇଠି ବିତାଇ ଦେବ । ଏଇ ସମୟରେ ଜଣେ ତାନ୍ତ୍ରିକ ଗୋଟିଏ ଝିଅ ଦେହରୁ ଭୂତ ଛଡ଼ାଇବା ପରେ ପରେ ଘଣ୍ଟିଏ ଭିତରେ ଭୂତକୁ ଆଣିଥାନ୍ତି ଓ ଘରଲୋକଙ୍କୁ କହି ଏକ ବଡ଼ ହାଣ୍ଡି ଭିତରେ ଭଲଭାବରେ ରନ୍ଧା ହୋଇଥିବା ଖାଦ୍ୟ ସବୁ ଆଣି ବରଗଛ ତଳେ ରଖିଦେଇ ଗଲେ । ସେତେବେଳେ ସୁଦର୍ଶନ ପେଟ ଭୋକରେ ଗମ୍ଗୁଡ଼ ହେଉଛି । ଏଣେ ହାଣ୍ଡିରୁ ଭଲ ଭଲ ଖାଦ୍ୟର ବାସ୍ନା ସବୁ ଆସି ତାକୁ ବ୍ୟସ୍ତ କରୁଛି । ତଥାପି ସେ ଧୈର୍ଯ୍ୟ ଧରି ବସିଲା ।

ଅଧାରାତି ହେଲା, ତଥାପି ସେ ଅଟଳ । ଏଇ ସମୟରେ ଚୋର ଗୁଡ଼ାଏ ଆସି ଚୋରିମାଲ ବାଣ୍ଟିବାକୁ ସେଇ ଗଛତଳେ ବସିଲେ । ଓସେତେବେଳେ ସେମାନଙ୍କ ପେଟ ମଧ୍ୟ ଭୋକରେ ଆଉଟୁ ପାଉଟୁ ହେଉଛି । ସେମାନଙ୍କ ମଧ୍ୟରୁ ଦୁଇ ତିନିଜଣ ଲୋଭ ସମ୍ଭାଳି ନ ପାରି ହାଣ୍ଡି ଉପରେ ଝାମ୍ପି ପଡ଼ିଲେ । ଏତିକିବେଳେ ଦଳର ମୁଖ୍ୟ ଚୋର ରାଗିକରି କହିଲା, "ଟିକିଏ ହେଲେ ବୁଦ୍ଧି ନାହିଁ ତମମାନଙ୍କର? ଏତେ ରାତିରେ ଏପରି ଏକ ସ୍ଥାନରେ କିଏ ଭଲ ଭଲ ଖାଦ୍ୟ ତୁମ ପାଇଁ ରଖିଛି? ବୋଧହୁଏ ଏଥିରେ ବିଷ ମିଶା ହୋଇଛି

ଆମକୁ ପ୍ରଲୋଭିତ କରି ମାରିବା ପାଇଁ । ପ୍ରଥମେ ପରୀକ୍ଷା କରି ଦେଖ ତା' ପରେ ଖାଅ ।"

ଚୋରମାନେ ଏପଟ ସେପଟ ଦେଖୁ ଦେଖୁ ତାଙ୍କ ନଜର ପଡ଼ିଲା ଯାଇ ସୁଦର୍ଶନ ଉପରେ । ସଙ୍ଗେ ସଙ୍ଗେ ସମସ୍ତେ ତା' ପାଖକୁ ଯାଇ ଗର୍ଜି ଗର୍ଜି କହିଲେ, "ଓ ତୁ ବଦମାସ୍ ଏଇଠି ବସିଛୁ ଆମର ମରଣ ଦେଖିବାକୁ? ତେବେ ତୁହି ଏଥିରେ ବିଷ ମିଶାଇ ରଖିଛୁ । ଆମେ ଖାଇ ମରିଗଲେ ତୋର ଆନନ୍ଦ! ସବୁ ଚୋରିମାଲ ପାଇଯିବୁ । ଶଇତାନ୍ କାହାଁକା! ତତେହିଁ ଏବେ ଆମେ ସେ ଖାଦ୍ୟ ସବୁ ଖୁଆଇବୁ ।"

ସୁଦର୍ଶନ ବିଚରା ଘାବରେଇ ଯାଇ କହିଲା, "ସେ ସବୁ ଖାଦ୍ୟ ବିଷୟ ମୁଁ କିଛି ଜାଣେନାହିଁ । ମୁଁ ଅନ୍ୟ ଉଦ୍ଦେଶ୍ୟରେ ଏଠାରେ ବସିଛି । ଆଜି ମୋର ଉପବାସ ।"

ତା'କଥା ଶୁଣି ଚୋରମାନଙ୍କ ସନ୍ଦେହ ଆହୁରି ଦୃଢ଼ୀଭୂତ ହୋଇଗଲା । ସେମାନେ ହୋ ହୋ କରି ହସିଲେ ଓ ତାକୁ ବେଶ୍ ପିଟିଲେ । ପରେ ସେମାନେ ସମସ୍ତେ ମିଳି ସବୁ ଖାଦ୍ୟଯାକ ତାକୁ ମାଡ଼ବସି ଖୁଆଇଲେ । ବାଧ୍ୟ ହୋଇ ସେ ସବୁ ଗିଳି ପକାଇଲା ।

ଖାଇବା ପରେ ସୁଦର୍ଶନ ନ ମରିବାରୁ ବଳିଥିବା ଖାଦ୍ୟ ସେମାନେ ଖୁସିରେ ଖାଇଲେ ଓ ପରେ ଚୋରିମାଲ ସବୁ ନିଜ ନିଜ ଭିତରେ ବଣ୍ଟାବଣ୍ଟି କରି ଚାଲିଗଲେ ।

"ଶେଷରେ ଈଶ୍ୱରହିଁ ଜିତିଲେ । ମୁଁ ଖାଇବି ନାହିଁ ବୋଲି ମନସ୍ଥ କଲି । କିନ୍ତୁ ମୋ କଥା ମୁଁ ରଖିପାରିଲି ନାହିଁ । ମୋ ପାଇଁ ଓ ଚୋରମାନଙ୍କ ପାଇଁ ମଧ୍ୟ ଭଗବାନ୍ ଖାଦ୍ୟ ରଖିଛନ୍ତି । ଭକ୍ତ ଶିବଦାସ ଠିକ୍ କଥା କହୁଥିଲେ ।" କହିଲା ସୁଦର୍ଶନ । ତା'ପରେ ସେ ଘରଆଡ଼େ ଚାଲିଲା ।







# ସ୍ୱପ୍ନ ବୃତ୍ତାନ୍ତ

ବହୁତ ଦିନ ତଳର କଥା । କୋଶଳ ଦେଶରେ ରାଜତ୍ୱ କରୁଥା'ନ୍ତି ରାଜା ବିମ୍ବିସାର । ଦିନେ ରାତିରେ ରାଜା ବିଭିନ୍ନ ପ୍ରକାରର ଅଦ୍ଭୁତ ସ୍ୱପ୍ନ ସବୁ ଦେଖିଲେ । ନିଦରୁ ଉଠି ସେ ତାହାର ଅର୍ଥ ଜାଣିବାକୁ ଚେଷ୍ଟାକଲେ କାଳେ କିଛି ବିପଦ ଥାଇପାରେ ବୋଲି; ସକାଳ ହେବା ମାତ୍ରେ ସେ ରାଜ୍ୟର ବଡ଼ ବଡ଼ ଜ୍ଞାନୀ ଓ ଜ୍ୟୋତିଷମାନଙ୍କୁ ଡାକି ସେ ସବୁର ଅର୍ଥ ପଚାରିଲେ ।

ସେମାନେ ରାଜାଙ୍କୁ କହିଲେ, "ମହାରାଜ, ଏଭଳି ଅଦ୍ଭୁତ ସ୍ୱପ୍ନର ଅର୍ଥ ତ ଏତେ ସହଜରେ କୁହାଯାଇ ପାରିବ ନାହିଁ! ଆମକୁ ଦୁଇ ଚାରିଦିନ ସମୟ ଦିଅନ୍ତୁ । ଆମେ ସ୍ୱପ୍ନ ସମ୍ବନ୍ଧରେ ଲେଖା ହୋଇଥିବା ପୋଥି ସବୁ ପଢ଼ି ତାହାର ଗୂଢ଼ାର୍ଥ ବାହାର କରିବୁ ।" ରାଜା ସେଥିରେ ସମ୍ମତ ହେଲେ ।

ସେ ଜ୍ୟୋତିଷ ଓ ପଣ୍ଡିତମାନେ ନିଜ ନିଜ ଭିତରେ ଆଲୋଚନା କଲେ । ସେସବୁ ଆଲୋଚନା ଗୋପନ ରହିଲା ।

ଦୁଇ ଚାରିଦିନ ପରେ ସେମାନେ ରାଜାଙ୍କ ପାଖକୁ ଯାଇ କହିଲେ, "ଆମେ ସମସ୍ତେ ବିଚାର କରି ଯାହା ନିର୍ଣ୍ଣୟ କରିଛୁ, ତାହା ହେଲା ଏ ସ୍ୱପ୍ନ ଆପଣଙ୍କ ପାଇଁ, ଆପଣଙ୍କ ପରିବାର ପାଇଁ ତଥା ରାଜ୍ୟ ପାଇଁ ଏକ ଆଶୁ ବିପଦର ସୂଚନା ଦେଉଛି ।"

ରାଜା ଏକଥା ଶୁଣି ଚମକି ଉଠିଲେ । ଚିନ୍ତିତ ହୋଇ ସେ କହିଲେ, "ବୁଝିଲି, କିନ୍ତୁ ଏହାର କ'ଣ କିଛି ପ୍ରତିକାର କରାଯାଇ ପାରିବ ନାହିଁ ?"

"ଆଜ୍ଞା ମହାରାଜ, ନିଶ୍ଚୟ ପ୍ରତିକାର ଅଛି । ଯଦି ଦେଶର ସବୁ ଛକ ରାସ୍ତାମାନଙ୍କରେ ଯଜ୍ଞ କରାଯିବ ଓ ଯଜ୍ଞ ସମାପ୍ତି ପରେ ବିପୁଳ ଅର୍ଥ

ଦାନ ଦିଆଯିବ ତେବେ ଦେଶର କଲ୍ୟାଣ ହେବ । ଆମେମାନେ ଯଜ୍ଞ କରିବୁ ।”

ରାଜା ସେମାନଙ୍କ ପରାମର୍ଶରେ କୋଷାଧ୍ୟକ୍ଷଙ୍କୁ ଯଜ୍ଞ ପ୍ରସ୍ତୁତ ପାଇଁ ଆଦେଶ ଦେଲେ । ରାଜାଙ୍କଠାରୁ ଏସବୁ ଶୁଣି ମହାରାଣୀ ଟିକିଏ ଆଶ୍ଚର୍ଯ୍ୟ ହେଲେ । ସେ ଥିଲେ ବୁଦ୍ଧିମତୀ ଓ ଜ୍ଞାନବତୀ । ସେ ସଙ୍ଗେ ସଙ୍ଗେ ବୁଝିନେଲେ ଯେ ଏ ଲୋକମାନେ ଦାନ ପାଇବା ଲୋଭରେ ରାଜାଙ୍କୁ ଏପରି ପରାମର୍ଶ ଦେଇଛନ୍ତି । ସେକଥା ରାଣୀ ରାଜାଙ୍କୁ ନ କହି କହିଲେ, “ମହାରାଜ, ସ୍ୱପ୍ନ ବିଷୟରେ ଆପଣ ହଠାତ୍ କିଛି କରିପକାନ୍ତୁ ନାହିଁ । ଯଜ୍ଞ ସବୁ ସ୍ଥଗିତ ରଖନ୍ତୁ । ଭଗବାନ୍ ବୁଦ୍ଧ ନିକଟସ୍ଥ ଜେତବନରେ ତାଙ୍କର ଶିଷ୍ୟମାନଙ୍କୁ ଧରି ଅବସ୍ଥାନ କରୁଛନ୍ତି । ଆପଣ ପ୍ରଥମେ ସେଠାକୁ ଯାଇ ତାଙ୍କୁ ଏସବୁ ପଚାରନ୍ତୁ । ତା’ପରେ ସନ୍ତୁଷ୍ଟ ନ ହେଲେ ଯଜ୍ଞ କରିବେ ।”

ରାଜା ରାଣୀଙ୍କ ପ୍ରସ୍ତାବରେ ରାଜି ହେଲେ । ସେ କେତେକ ମନ୍ତ୍ରୀ ନେଇ ଭଗବାନ୍ ବୁଦ୍ଧଙ୍କୁ ତାଙ୍କ ଶିଷ୍ୟବର୍ଗଙ୍କ ସହ ରାଜପୁରୀରେ ଭିକ୍ଷା ପାଇଁ ନିମନ୍ତ୍ରଣ କରି ଆସିଲେ । ନିର୍ଦ୍ଧାରିତ ଦିନରେ ବୁଦ୍ଧ ସେଠାରେ ପହଞ୍ଚିଲେ । ଶିଷ୍ୟବର୍ଗ ରାଜମହଲରେ ଅବସ୍ଥାନ କରୁଥା’ନ୍ତି । ବୁଦ୍ଧଙ୍କୁ ରାଜା ଅନ୍ଦର ମହଲକୁ ନେଇ ଯାଇ ରାଣୀଙ୍କ ଉପସ୍ଥିତିରେ ନିଜର ସ୍ୱପ୍ନ ବୃତ୍ତାନ୍ତ କହିଲେ ।



ସେ କହିଲେ, “ଭଗବାନ୍, ଆପଣ ତ ସର୍ବଜ୍ଞ । ଆପଣଙ୍କ ପାଇଁ କିଛି ରହସ୍ୟମୟ ହୋଇ ରହିପାରିବ ନାହିଁ । ମୋ ସ୍ୱପ୍ନ ଗୁଡ଼ିକ ପାଇଁ ମୁଁ ବହୁତ ଚିନ୍ତିତ । କୃପାକରି ସେସବୁର ଅର୍ଥ ମୋତେ କୁହନ୍ତୁ ଓ ଯଦି ଭବିଷ୍ୟତରେ କିଛି ବିପଦ ଥାଏ ମୋତେ, ମୋର ପରିବାର ଓ ପ୍ରଜାବର୍ଗଙ୍କୁ ସେଥିରୁ ରକ୍ଷା କରନ୍ତୁ ।”

“ରାଜା, ଆପଣ ସ୍ୱପ୍ନକଥା କୁହନ୍ତୁ, ମୁଁ ଅର୍ଥ କରିବାକୁ ଚେଷ୍ଟା କରିବି ।” ଭଗବାନ ବୁଦ୍ଧ କହିଲେ ।

“ପ୍ରଥମେ ମୁଁ ଦେଖିଲି ଚାରୋଟି ମଇଁଷି । ସେମାନେ ଲଢୁଛନ୍ତି ଓ ଲଢୁ ଲଢୁ ରାଜମହଲକୁ ପଶି ଆସୁଛନ୍ତି । ଲୋକେ ଦେଖୁଛନ୍ତି ।



"କିଛି ସମୟ ପରେ ସେମାନେ ସେ ସ୍ଥାନ ଛାଡି ଚୁପ୍‌ଚାପ୍ ଚାଲିଗଲେ।" ରାଜା କହିଲେ।

"ଏ ସ୍ୱପ୍ନ ସହିତ ଆପଣଙ୍କର କିଛି ସମ୍ବନ୍ଧ ନାହିଁ। କିନ୍ତୁ ଏହାର ଅର୍ଥ ହେଉଛି ଆପଣଙ୍କ ପରେ ଭବିଷ୍ୟତରେ ହେବାକୁ ଯାଉଥିବା ରାଜା ଜଣେ ପାପୀ ରାଜା ହେବେ। ତାଙ୍କ ସମୟରେ ଆକାଶକୁ ମେଘ ଢାଙ୍କିଦେବ କିନ୍ତୁ ବର୍ଷା ନ ହୋଇ ଉଡ଼ିଯିବ। ଲୋକେ ନିରାଶ ହେବେ।" ବୁଦ୍ଧ କହିଲେ।

"ତା'ପରେ ଦେଖିଲି ଛୋଟ ଛୋଟ ଗଛରେ ଫଳ ଧରିଛି। ଏହାର କ'ଣ ଅର୍ଥ?" ରାଜା କହିଲେ।

"ସେତେବେଳେ ବାଳିକାମାନେ ବୟସ ହେବା ଆଗରୁ ବିବାହ କରିବେ ଓ ମା' ମଧ୍ୟ ହୋଇଯିବେ।" ବୁଦ୍ଧ କହିଲେ।

ରାଜା କହିଲେ, "ଆଉରି ଏକ ଅଜବ ସ୍ୱପ୍ନ ଦେଖିଲି ଯେଉଁଥିରେ ବାଛୁରି ପାଖରୁ ଗାଈ ଦୁଧ ପିଉଛି।"

"ଆପଣଙ୍କ ପରେ ଯେଉଁ ଯୁଗ ଆସିବ ସେତେବେଳେ ବୁଢ଼ା ଓ ବୟସ୍କମାନେ ପିଲା ବା ସାନମାନଙ୍କ ଉପରେ ନିର୍ଭର କରିବେ—ଏହାହିଁ ସେ ସ୍ୱପ୍ନର ଅର୍ଥ।" ବୁଦ୍ଧଦେବ କହିଲେ।

ବୁଦ୍ଧଙ୍କ ସ୍ୱପ୍ନ ନିର୍ଣ୍ଣୟରେ ରାଜା ଖୁସି ହୋଇ ତା'ପରେ ଦେଖିଥିବା ସ୍ୱପ୍ନ କହିଲେ, "ଗୋଟିଏ ସ୍ୱପ୍ନରେ ଦେଖିଲି ଚାଷୀମାନେ ହଳରୁ ବଳଦମାନଙ୍କୁ କାଢ଼ିଦେଇ ବାଛୁରିମାନଙ୍କୁ ଯୋଚି ହଳ କରୁଛନ୍ତି।"

"ଆସନ୍ତା ଯୁଗରେ ରାଜା ଯୋଗ୍ୟ ମନ୍ତ୍ରୀମାନଙ୍କୁ ଛାଡ଼ିଦେଇ ଅଯୋଗ୍ୟ ବ୍ୟକ୍ତିଙ୍କୁ ରାଜ୍ୟ ଶାସନର ଭାର ଦେବେ।" ବୁଦ୍ଧ କହିଲେ।

"ତା'ପରେ ମୁଁ ଦେଖିଲି ଏକ ବିଚିତ୍ର ଘୋଡ଼ା। ଯାହାର ଦୁଇପଟେ ଥିଲି ମୁହଁ। ଦୁଇ ମୁହଁରେ ସେ ଘାସ ଚରୁଛି। ଏହାର ଅର୍ଥ କ'ଣ?" ରାଜା ପଚାରିଲେ।

"ଏହାର ମଧ୍ୟ ଗୁଢ଼ ଅର୍ଥ ଅଛି। ଆସନ୍ତା ଯୁଗରେ ନ୍ୟାୟାଧୀଶମାନେ ନିରପେକ୍ଷ ବିଚାର ନକରି ଦୁଇ ପକ୍ଷରୁ ଲାଞ୍ଚ ନେବେ ଏବଂ ଶେଷରୁ



ଯାହା ଇଚ୍ଛା ଗୋଟାଏ ବଚ୍ଚୁର କରି ବସିବେ ।” ବୃଦ୍ଧ ଉତ୍ତର ଦେଲେ ।

“ପୁଣି ଗୋଟାଏ ସ୍ୱପ୍ନରେ ଦେଖିଲି ଜଣେ ଲୋକ କିଛି ଖାଦ୍ୟଦ୍ରବ୍ୟ ବାଣ୍ଟୁଛି । ବଣ୍ଟା ହୋଇଥିବା ଖାଦ୍ୟ ଗୋଟାଏ ପଶୁ ଖାଇ ଯାଉଛି—ଏହାର ଅର୍ଥ କ'ଣ ?” ରାଜା କହିଲେ ।

“ଏହାର ଅର୍ଥ ସ୍ୱାମୀମାନେ ଯେତେ ଅର୍ଥ ଉପାର୍ଜ୍ଜନ କରି ଆଣିବେ ସ୍ତ୍ରୀମାନେ ସବୁ ଖାଇ ଖାଇ ଉଡ଼େଇ ଦେବେ ।” ବୃଦ୍ଧ କହିଲେ ।

“ପୁଣି ଆଉ ଏକ ସ୍ୱପ୍ନ ଦେଖିଲି ଏକ ବଡ଼ ମାଠିଆରେ ସବୁ ଜାତିର ଲୋକ ପାଣି ଭର୍ତ୍ତି କରୁଛନ୍ତି । ସେ ବଡ଼ ମାଠିଆ ଚାରିପାଖରେ ଛୋଟ ଛୋଟ ମାଠିଆ ଅଛି । କିନ୍ତୁ ସେସବୁ ଖାଲି । ବଡ଼ ମାଠିଆରେ ପାଣି ବେଶି ହୋଇ ତଳକୁ ବୋହି ଯାଉଛି । ଏହାର ଅର୍ଥ କ'ଣ ହୋଇପାରେ ?” ରାଜା ପଚାରିଲେ ।

“ଭବିଷ୍ୟତ ଯୁଗରେ ଅନ୍ୟାୟ ଓ ଅଧର୍ମ ବଢ଼ିଯିବ । ପ୍ରଜାମାନେ କଠିନ ପରିଶ୍ରମ କରି ଧନ ଅର୍ଜ୍ଜନ କରିବେ ଆଉ ସବୁ ଧନ ଖଜଣା ଦେବାରେ ଶେଷ ହେବ । ଖଜଣା ଧନରେ ରାଜକୋଷ ପୂର୍ବରୁହିଁ ପୂର୍ଣ୍ଣ ଥିବ । ତେଣୁ ପ୍ରଜାଙ୍କର ଘର ଖାଲି ମାଠିଆ ପରି ଧନ ଶୂନ୍ୟ ହୋଇ ରହିବ ।” ବୃଦ୍ଧ କହିଲେ ।

“ଆଉ ଏକ ସ୍ୱପ୍ନରେ ଦେଖିଲି, ଗୋଟିଏ ପାତ୍ରରେ ଅନ୍ନ ଅଧିକ ସିଦ୍ଧ ହୋଇ ଘାଣ୍ଟି ହୋଇଗଲାଣି, ଆଉ ଏକ ପାତ୍ରରେ ଭଲଭାବେ ସିଦ୍ଧ ହୋଇଛି, ଆଉ ଏକ ପାତ୍ରରେ ଆଦୌ ସିଦ୍ଧ ହୋଇ ନାହିଁ । ଏହାର ଅର୍ଥ କ'ଣ ?” ରାଜା ପଚାରିଲେ ।

“ଏହାର ଅର୍ଥ ଅତିବୃଷ୍ଟି ଓ ବନ୍ୟାରେ ଅନେକ କ୍ଷେତବାଡ଼ ନଷ୍ଟ ହେବ । ଆଉ କେତେକ କ୍ଷେତବାଡ଼ ବୃଷ୍ଟି ବିନା ଶୁଖିଲା ରହିବ । କେତେକ ଜମି ମାତ୍ର ଆବଶ୍ୟକୀୟ ବର୍ଷା ପାଇବ ।” ବୃଦ୍ଧ କହିଲେ ।

ଆଉ ଗୋଟିଏ ସ୍ୱପ୍ନ ବିଷୟରେ ରାଜା କହିଲେ, “କେତେକ ଲୋକ ଚାରିଆଡ଼େ ବୁଲି ବୁଲି ଚନ୍ଦନ ବିକି କରି ନିଜ ପେଟ ପୋଷୁଛନ୍ତି ।”

ବୁଦ୍ଧ କହିଲେ, "ଏହାର ଅର୍ଥ ଆସନ୍ତା ଯୁଗରେ ନୀଚ ବ୍ୟକ୍ତି ପବିତ୍ର ଧର୍ମ ଉପଦେଶ ଦେଇ ତୁଚ୍ଛ ଭୌତିକ ସୁଖ ପ୍ରାପ୍ତ କରିବେ।"

"ଆଉ ଗୋଟିଏ ସ୍ୱପ୍ନରେ ମୁଁ ଦେଖିଲି ଗୋଟିଏ କାଉ ପଛରେ ଦଳେ ରାଜହଂସ ଚାଲିଛନ୍ତି ଏବଂ ଆଉ ଗୋଟାଏ ସ୍ଥାନରେ ଛେଳିମାନେ ବାଘକୁ ଗୋଡ଼ାଇ ଗୋଡ଼ାଇ ମାରି ତାକୁ ଖାଉଛନ୍ତି।" ରାଜା ଉତ୍କଣ୍ଠିତ ଭାବରେ ପୁନର୍ବାର ପ୍ରଶ୍ନ କଲେ।

ବୁଦ୍ଧ କହିଲେ, "ରାଜନ, ଆପଣ ଚିନ୍ତା କରନ୍ତୁ ନାହିଁ। ଏସବୁ ସ୍ୱପ୍ନ ଭବିଷ୍ୟତର, ଏବର ନୁହେଁ। ଭବିଷ୍ୟତରେ ଧର୍ମନାଶ ଘଟିବ। ତେଣୁ ବଡ଼ ବଡ଼ ଜ୍ଞାନୀ ଓ ମହାତ୍ମାମାନେ ସମାଜରେ ଅନାଦର ପାଇବେ ଓ ଅପମାନିତ ହୋଇ ସମୟ ପ୍ରବାହରେ ପଥର ପରି ପଡ଼ି ରହିବେ। ଦୁଷ୍ଟମାନଙ୍କ ହାତରେ ଅଧିକାର ରହିବ। ସାଧୁମାନେ ତାଙ୍କୁ ଅନୁସରଣ କରିବେ। ଏପରିକି ନୀଚ ବ୍ୟକ୍ତି ସୁବିଧା ଦେଖି ଜ୍ଞାନୀମାନଙ୍କୁ ବା ସାଧୁମାନଙ୍କୁ ମାରିଦେବେ।"

ଭଗବାନ ବୁଦ୍ଧଙ୍କ ସ୍ୱପ୍ନ ନିର୍ଣ୍ଣୟରେ ବିମ୍ବିସାରଙ୍କର ସବୁ ସନ୍ଦେହ ଦୂର ହେଲା। ତାଙ୍କର ଭୟ ଓ ଦୁଶ୍ଚିନ୍ତା ମଧ୍ୟ ଦୂର ହେଲା। ସେ ବୁଝିଲେ ଜ୍ୟୋତିଷ ଓ ପଣ୍ଡିତମାନେ ନିଜ ସ୍ୱାର୍ଥ ପାଇଁ ତାଙ୍କୁ ଯଜ୍ଞ କରିବାର ପରାମର୍ଶ ଦେଇଥିଲେ। ତେଣୁ ରାଜା ଯଜ୍ଞ କରିବାକୁ ଆଉ ଇଚ୍ଛା କଲେ ନାହିଁ ଏବଂ ଭଗବାନ୍ ବୁଦ୍ଧଙ୍କୁ ଓ ତାଙ୍କ ଶିଷ୍ୟବର୍ଗଙ୍କୁ ଯଥେଷ୍ଟ ଭିକ୍ଷା ଦେଇ ହୃଷ୍ଟ ମନରେ ବିଦାୟ ଦେଲେ।

ସେ ଭଗବାନ ବୁଦ୍ଧଙ୍କ ପ୍ରତି ଅତ୍ୟନ୍ତ କୃତଜ୍ଞ ଅନୁଭବ କଲେ। ସ୍ୱପ୍ନର ବ୍ୟାଖ୍ୟା କରିବା ଯେ ସମସ୍ତଙ୍କ ପକ୍ଷରେ ସହଜ ନୁହେଁ ଏବଂ ସେଥିପାଇଁ ଗଭୀର ଆଧ୍ୟାତ୍ମିକ ଜ୍ଞାନ ଆବଶ୍ୟକ, ରାଜା ସେକଥା ମଧ୍ୟ ହୃଦୟଙ୍ଗମ କଲେ। ସେ ବୁଦ୍ଧଙ୍କୁ ଅଭିବାଦନ ଜଣାଇ ତାଙ୍କୁ ବିଦାୟ ଦେଲେ।





ଭାରତ-କାହାଣୀ

# ଟିପୁ ସୁଲ୍‌ତାନ୍‌

ମହୀଶୂରର ଶାସକ ହାଇଦର୍‌ ଅଲି ଇଷ୍ଟ୍‌ ଇଣ୍ଡିଆ କୋମ୍ପାନୀର କର୍ତ୍ତୃତ୍ୱକୁ ଖାତିର୍‌ କଲେ ନାହିଁ । ତାଙ୍କ ସହିତ କୋମ୍ପାନୀର ବିବାଦ ତୀବ୍ର ହେଲା । ଫଳରେ ଯୁଦ୍ଧ ଲାଗିଲା । ୧୭୮୨ ରେ ମୃତ୍ୟୁ ପର୍ଯ୍ୟନ୍ତ ହାଇଦର୍‌ ଅଲି କୋମ୍ପାନି ବିରୁଦ୍ଧରେ ଲଢ଼ୁଥିଲେ ।

ତାହାପରେ ତାଙ୍କ ପୁଅ ଟିପୁ ସୁଲ୍‌ତାନ୍‌ ମହୀଶୂର ବାହିନୀର ନେତୃତ୍ୱ ନେଇ ଲଢ଼ିଲେ । ସେ ଯେପରି ସାହସୀ ଥିଲେ, ସେହିପରି ଥିଲେ ବୁଦ୍ଧିମାନ । ସେ ବିଦେଶୀ ପାଖରେ ମୁଣ୍ଡ ନୁଆଁଇବେ ନାହିଁ ବୋଲି ଶପଥ କରିଥାନ୍ତି । ଶତ୍ରୁ ବାହିନୀ ଭିତରେ ସେ ଆତଙ୍କ ସୃଷ୍ଟି କରୁଥିଲେ ।





ଇଂରେଜମାନେ ପରାସ୍ତ ହେଲେ । ସେତିକି ନୁହେଁ, ଟିପୁଙ୍କ ସୁଦକ୍ଷ ଯୁଦ୍ଧ ପରିଚାଳନା ଫଳରେ ପରାସ୍ତ ବାହିନୀର ଅଧ୍ୟକ୍ଷ ବ୍ରିଗେଡ଼ିଆର୍‌ ମାଥ୍ୟୁସ୍‌ ବନ୍ଦୀ ହେଲେ । ୧୭୮୪ ରେ ବାଧ୍ୟ ହୋଇ କୋମ୍ପାନି ଟିପୁଙ୍କ ସହିତ ସନ୍ଧି କଲା ।




କିଛି କାଳପାଏ କୋମ୍ପାନି ଓ ଟିପୁ ସୁଲ୍‌ତାନ୍‌ଙ୍କ ଭିତରେ ଶାନ୍ତି ବିରାଜମାନ କଲା । କିନ୍ତୁ ବ୍ରିଟିଶ-ଭାରତର ଗଭର୍ଣ୍ଣର ଜେନେରାଲ୍ ଲର୍ଡ କର୍ଣ୍ଣୱାଲିସ୍ ମହୀଶୂରର ବୀର ସୁଲ୍‌ତାନଙ୍କୁ କୌଣସି ମତେ କାବୁ କରିବା ଅପେକ୍ଷାରେ ଥାନ୍ତି । ସେ ଏକ ବିରାଟ ସୈନ୍ୟବାହିନୀ ଧରି ତିନିଥର ମହୀଶୂର ଆକ୍ରମଣ କଲେ ।

ଶ୍ରୀରଙ୍ଗପଟ୍ଟନ ସହରକୁ ଇଂରେଜ୍‌ମାନେ ଦଖଲ କରିନେଲେ । ୧୭୯୨ରେ ବାଧ୍ୟ ହୋଇ ଟିପୁ କୋମ୍ପାନି ସହ ସନ୍ଧି କଲେ । ତାଙ୍କ ରାଜ୍ୟର ଅଧିକାଂଶ ଅଞ୍ଚଳ କୋମ୍ପାନି ନେଇଗଲେ । ସେତିକି ନୁହେଁ, ତାଙ୍କର ଦୁଇ ପୁଅଙ୍କୁ ବନ୍ଧକ ହିସାବରେ ବି ରଖିଲେ ।





ଏ ଅବସ୍ଥାକୁ ଦୀର୍ଘକାଳ ସହିବା ଲୋକ ଟିପୁ ସୁଲ୍‌ତାନ ନଥିଲେ । ସେ ହାଇଦ୍ରାବାଦର ନିଜାମଙ୍କ ସହ ଯୋଗସୂତ୍ର ପାଇଁ ଚେଷ୍ଟା କଲେ । ନିଜ ପୁଅ ସହ ନିଜାମଙ୍କ ଝିଅର ବିବାହ ନିମନ୍ତେ ସେ ପ୍ରସ୍ତାବ ପଠାଇଲେ ।

କିନ୍ତୁ ସେତେବେଳକୁ ନିଜାମ୍ କୋମ୍ପାନି ସହ ସୁସମ୍ପର୍କ ସ୍ଥାପନ କରିଥାନ୍ତି । ଟିପୁ ସୁଲ୍‌ତାନ୍ ଆରବ, ଆଫଗାନିସ୍ଥାନ, ତୁରସ୍କ ଓ ଫ୍ରାନ୍ସକୁ ଦୂତ ପଠାଇ ଇଂରେଜ୍ ବିରୁଦ୍ଧରେ ସେମାନଙ୍କ ସାହାଯ୍ୟ କାମନା କଲେ । କିନ୍ତୁ ସବୁ ଦେଶ ସେତେବେଳେ ନିଜ ନିଜ ସମସ୍ୟା ନେଇ ବ୍ୟସ୍ତ । ଟିପୁ କାହାଠୁଁ ଉତ୍ସାହ ପାଇଲେ ନାହିଁ ।






ମରିସାସ୍ ଦ୍ୱୀପରେ ଗୋଟାଏ ବିରାଟ ଫରାସୀ ସୈନ୍ୟବାହିନୀ ଅଛନ୍ତି ବୋଲି ଟିପୁ ଖବର ପାଇଲେ । ସେ ସେଠା-କାର ଫରାସୀ ଶାସକଙ୍କୁ ଗୋପନରେ ଲେଖିଲେ କି ତାଙ୍କୁ କିଛି ସୈନ୍ୟ ସାହାଯ୍ୟ ଦିଆଯାଉ । ସେଠାରେ ବାସ୍ତବିକ ଫରାସୀ ସୈନ୍ୟ ନଥିଲେ । ଶାସକ ଡେଙ୍ଗୁରା ଦେଲେ କି ଯାହାର ଇଚ୍ଛା ସେ ଭାରତ ଯାଇ ଟିପୁଙ୍କୁ ସାହାଯ୍ୟ କରୁ !

ସେତେବେଳକୁ ଲର୍ଡ ୱେଲ୍‌ସ୍‌ଲି ଭାରତର ଗଭର୍ଣ୍ଣର ଜେନ୍‌ରାଲ୍ ହୋଇ ଆସିଥାନ୍ତି । ମରିସାସ ରୁ ଟିପୁ ସୈନ୍ୟ ଆଣୁଛନ୍ତି ବୋଲି ଖବର ପାଇ ସେ ସଙ୍ଗେ ସଙ୍ଗେ ୧୭୯୮ରେ ଯୁଦ୍ଧ ଘୋଷଣା କରିଦେଲେ । କୋମ୍ପାନିକୁ ସାହାଯ୍ୟ ଦେଲେ ନିଜାମ ତଥା ମାରାଠାମାନେ । ଫଳରେ ଟିପୁଙ୍କ ବିରୋଧୀପକ୍ଷ ବହୁତ ବଳବାନ୍ ହେଲେ ।






ତିନି ଦିଗରୁ ଶ୍ରୀରଙ୍ଗପତ୍ତନ ଉପରେ ଆକ୍ରମଣ ହେଲା । କୋମ୍ପାନିର ବାହିନୀରେ ଥିଲେ ୩୫,୦୦୦ ସୈନ୍ୟ । କିନ୍ତୁ ଟିପୁ ସେମାନଙ୍କୁ ପରାସ୍ତ କରି-ଦେବାର ସମସ୍ତ ସମ୍ଭାବନା ଥିଲା । ତେବେ କୋମ୍ପାନିର ସହାୟତା କରୁଥିବା ଶତ୍ରୁମାନଙ୍କ ସମାବେଶହିଁ ଟିପୁଙ୍କୁ ବିପର୍ଯ୍ୟସ୍ତ କଲା ।

କୋମ୍ପାନି ପ୍ରସ୍ତାବ ଦେଲା କି ଟିପୁ ଆତ୍ମ-ସମର୍ପଣ କରି ମୋଟା ପେନ୍‌ସନ୍ ପାଇ ଆରାମରେ ରହନ୍ତୁ । କିନ୍ତୁ ଏ ପ୍ରସ୍ତାବକୁ ଟିପୁ ଘୃଣାଭରେ ପ୍ରତ୍ୟାଖ୍ୟାନ କଲେ । ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସେ ଯୁଦ୍ଧ କରିବାକୁ ସ୍ଥିର କଲେ ଓ ତାହାହିଁ କଲେ ।





ଇତିହାସରେ ଟିପୁ ସୁଲ୍‌ତାନ୍ ଏକ ଭାସ୍ୱର ଚରିତ୍ର ରୂପେ ସ୍ମରଣୀୟ ରହିଛନ୍ତି । ସେ କୌଣସି ଭାରତୀୟ ରାଜାଙ୍କ ବିରୁଦ୍ଧରେ ଯିବାକୁ ମଙ୍ଗୁ ନଥିଲେ, ଯଦିଓ ତାଙ୍କ ବିରୁଦ୍ଧରେ କୋମ୍ପାନି ସହ ଯୋଗ ଦେଇଥିଲେ କେତେକ ଭାରତୀୟ ଶାସକ । ସେ ମୁସଲ୍‌ମାନ ଥିଲେ ମଧ୍ୟ ହିନ୍ଦୁ ପ୍ରଜାଙ୍କ ପ୍ରତି ସୌଜନ୍ୟଶୀଳ ଥିଲେ ।




# ବଦ୍‌ରାଗର ରହସ୍ୟ

ଅରୁଣା ଯେତେବେଳେ ନୂଆ ହୋଇ ଶାଶୁଘରକୁ ଆସିଲା, ସେତେବେଳେ ତାକୁ କେହି କେହି ଗୋପନରେ କହିଦେଲେ, "ତମ ସ୍ୱାମୀ ସଦାନନ୍ଦ ଖୁବ୍ ଭଲ ମଣିଷ । ହେଲେ ଟିକିଏ ବଦ୍‌ରାଗୀ । କଥା କଥାରେ ଚିଡ଼ିଯାଆନ୍ତି । ତେଣୁ ସାବଧାନରେ ଚଳୁଥିବ ।"

ପ୍ରଥମ କିଛିଦିନ ଅରୁଣା କିଛି ବୁଝିପାରିଲା ନାହିଁ । ତା'ପରେ ଗାଁ ଛାଡ଼ି ଦୁହେଁ ସହରକୁ ଗଲେ । କାରଣ ସଦାନନ୍ଦ ସହରରେ ଭଲ ଚାକିରିଟିଏ ପାଇଥାଏ ।

ସେମାନେ ଗୋଟାଏ ଭଡ଼ା ଘରେ ଉଠିଲେ । ଘରଟି ଭଲ । ପଛପଟେ ଛୋଟିଆ ବଗିଚାଟିଏ ମଧ୍ୟ ଥାଏ ।

ସହରକୁ ଗଲାବେଳେ ବାଟରେ ହସି ହସି ସଦାନନ୍ଦ କହିଲା, "ମୋତେ ଲୋକେ କାହିଁକି ରାଗୀ ବୋଲି କହନ୍ତି, ମୁଁ ବୁଝି ପାରୁନାହିଁ ।"

"ମୁଁ ବି ବୁଝି ପାରୁନାହିଁ ।" ହସି ହସି କହିଲା ଅରୁଣା ।

କିନ୍ତୁ ଅରୁଣାକୁ ବୁଝିବାକୁ ବିଶେଷ ବିଳମ୍ବ ହେଲା ନାହିଁ । ସହରରେ ପହଞ୍ଚିବା ପରଦିନହିଁ ସଦାନନ୍ଦ କହିଲା, "କାମଦାମ ପାଇଁ ଗୋଟିଏ ଚାକର ରଖିବା ।"

"କ'ଣ ଦରକାର ? ଆମେ ଦୁଇଜଣ ମାତ୍ର ମଣିଷ । ମୁଁ ସବୁ କାମ ଏକା କରିପାରିବି ।" ଅରୁଣା କହିଲା ।

"ଏକା କରିଦେବ ? ଯଦି ଏକା କରିବା କଥା, ତେବେ ମୁଁ ବି ତ ଏକା କରିଦେବି !" ରାଗିଯାଇ ଏହା କହି ସଦାନନ୍ଦ ନିଜେ ବାଲ୍‌ଟିରେ ପାଣି ଆଣି ଘର ଚଟାଣ ସଫା କରିବାକୁ ବସିଗଲା ।

ଏଥିରେ ରାଗିଯିବା ଭଳି କଥା କ'ଣ ହେଲା, ସେକଥା ଅରୁଣା ବୁଝିପାରିଲା ନାହିଁ ।

"ବସୁନ୍ଧରା"



ସେ କାବା ହୋଇଗଲା । ତଟାଣ ସଫା କରିସାରି ସଦାନନ୍ଦ ଆହୁରି ଗୁଡ଼ାଏ କାମଦାମ ଶେଷ କରି କଚେରୀକୁ ବାହାରି ଗଲା ।

ସନ୍ଧ୍ୟାବେଳକୁ କଚେରୀରୁ ଫେରି ଆସି ସେ ପଚାରିଲା, "ଏ ଘର କପରି ଲାଗୁଛି?"

"ମନ୍ଦ ନୁହେଁ ।"

ପୁଣି ସଦାନନ୍ଦ ରାଗିଯାଇ ପାଟିକରି କହିଲା, "ମନ୍ଦ ନୁହେଁ ବୋଲି କାହିଁକି କହୁଛ? ବହୁତ ଭଲ ବୋଲି କହିପାରୁ ନାହିଁ? ଜାଣ? ଛନିମାସ ଅନବରତ ଖୋଜାଖୋଜି କରି ଏ ଘର ପାଇଛି । ପୁଣି ଭଡ଼ା କେତେ ସେକଥା ତ ଜାଣିଛ!"

ଅରୁଣା ନୀରବ ରହିଲା ।

"ଚୁପ୍ କରିଗଲ କାହିଁକି?" ଆହୁରି ରାଗିଯାଇ ପଚାରିଲା ସଦାନନ୍ଦ । ତା'ପରେ ସେ ବଗିଚା କାମ ଆରମ୍ଭ କରିଦେଲା ।

କ୍ରମେ ଅରୁଣା ଲକ୍ଷ୍ୟ କରି ଦେଖିଲା, ଯେତେବେଳେ ସଦାନନ୍ଦ ରାଗିଯାଏ, ସେତେବେଳେ ସେ ନିଜେହିଁ କଷ୍ଟ କରି କାମ କରେ । ଅରୁଣା ମନରେ ଏଥିରେ ବହୁତ କଷ୍ଟ ହେଲା । ଜଣେ ଏମିତି ରାଗିବ କାହିଁକି, କଷ୍ଟ ବା ପାଇବ କାହିଁକି?

ଖରାବେଳେ ସେ ଏକୁଟିଆ ମନଦୁଃଖ କରି ବସିଛି, ପଡ଼ୋଶୀ ଘରର ବୋହୂ ଅଞ୍ଜଳି ଆସି ତାକୁ ତା' ମନଦୁଃଖର କାରଣ ପଚାରିବାରୁ ସେ ସବୁ କହିଦେଲା । ଅଞ୍ଜଳି ଦୀର୍ଘନିଃଶ୍ୱାସ ଛାଡ଼ି କହିଲା, "ଭଉଣୀ! ମୁଁ ତମକୁ ଈର୍ଷା କରୁଛି । କାରଣ ମୋ ସ୍ୱାମୀଙ୍କ ଅବସ୍ଥା ସମ୍ପୂର୍ଣ୍ଣ ବିପରୀତ । ତାଙ୍କ ଭିତରେ ତେଜ ବୋଲି କିଛି ନାହିଁ । ତାଙ୍କୁ କେହି ଅପମାନ କରି କହିଲେ ବା ତାଙ୍କ ଆଗରେ କେହି ମୋର ଅପମାନ କଲେ ବି ସେ ଚୁପ୍ ରହିବେ । ସେଥିଯୋଗୁଁ ମୋର ଯେତେ ମନ ଖରାପ, ତାହା ତମ ତୁଳନାରେ ବହୁତ ବେଶୀ ।"

ଅରୁଣା ହସିଲା । ସେ କହିଲା, "ମଣିଷ ଚରିତ୍ର ବାସ୍ତବିକ ବିଚିତ୍ର!"

ଦିନେ ଅରୁଣା ଘରେ ଜଣେ ସନ୍ଥ ଆସି ଅତିଥି ହେଲେ । ତାଙ୍କୁ ସଦାନନ୍ଦହିଁ ଆଣିଥିଲା । ସଦାନନ୍ଦଙ୍କ ବାପାଙ୍କ ଅମଳରୁ ସନ୍ଥ ବର୍ଷକରେ

ତା ଦୁଇବର୍ଷରେ ଆସି ସେମାନଙ୍କ ଘରେ ଦୁଇ ଚାରିଦିନ ରହି ଯାଉଥିଲେ।

"ମା, ତୋତେ ବିମର୍ଷ ଦେଖୁଛି କାହିଁକି?" କେହି ନଥିବା ବେଳେ ସନ୍ଥ ଅରୁଣାକୁ ପଚାରିଲେ।

"ବାବା, ମୋ ସ୍ୱାମୀ ବଡ଼ ବଦ୍‌ରାଗୀ।" ଅରୁଣା କହିଲା।

ସନ୍ଥ କହିଲେ, "ଆଚ୍ଛା, ତା' ସ୍ୱଭାବ ଯୋଗୁଁ ତମର କିଛି କ୍ଷତି ହେଉଛି?"

ଅରୁଣା ଟିକିଏ ଭାବି କହିଲା, "ବାସ୍ତବିକ ମୋର କ୍ଷତି କିଛି ନାହିଁ। କ୍ଷତି ହେଉଛି ତାଙ୍କର। ସେ ରାଗିଗଲେ ତରବର ହୋଇ କିଛି ନା କିଛି କାମ କରନ୍ତି। ସେଥିରେ ତାଙ୍କର ଶାରୀରିକ କଷ୍ଟ ବହୁତ ହୁଏ।"

"ଆଚ୍ଛା ମା, ମୁଁ ଯଦି ତା' ସ୍ୱଭାବ ବଦଳାଇବା ସକାଶେ ପ୍ରାର୍ଥନା କରିବ, ତେବେ ତୋତେ ବି ଗୋଟାଏ କାମ କରିବାକୁ ପଡ଼ିବ। ମାସେ କାଳ ଖାଲି ଓଳିଏ ଲେଖାଏଁ ଖାଇବୁ। ପାରିବୁ?" ସନ୍ଥ ପଚାରିଲେ।

"ନିଶ୍ଚୟ ପାରିବ! ଆଜିଠାରୁ ତାହାହିଁ କରିବ। ମାସେ କାହିଁକି, ସାରା ଜୀବନ ଏପରି କରିବାକୁ ମୋର କୁଣ୍ଠା ନାହିଁ।" ଅରୁଣା କହିଲା।

ସଦାନନ୍ଦ ସନ୍ଧ୍ୟାବେଳେ ଫେରିବାରୁ ସନ୍ଥ ତାକୁ ଏକାନ୍ତରେ କହିଲେ, "ତମ ରାଗ ଯୋଗୁଁ ତମେ କଷ୍ଟ ପାଉଛ। ଅଥଚ ଅରୁଣା



ସେପାଇଁ ସାରା ଜୀବନ ଓଳିଏ ଖାଇ ରହିବାକୁ ପ୍ରସ୍ତୁତ। ତମ ପାଇଁ ତା'ର କେତେ ଚିନ୍ତା, ଏଥିରୁ ତମେ ବୁଝିବା ଉଚିତ!"

ସଦାନନ୍ଦ ବୁଝିଲା। କିନ୍ତୁ ସନ୍ଥ ବିଦାୟ ନେଇ ଚାଲିଯିବା ମାତ୍ରେ ଅରୁଣା ଉପରେ ରାଗିଯାଇ କହିଲା, "କାହିଁକି ଓଳିଏ ଖାଇବ ବୋଲି ସନ୍ଥଙ୍କୁ କହିଲ?" ରାଗିଯାଇ ସଦାନନ୍ଦ ସଙ୍ଗେ ସଙ୍ଗେ ଘର ଝାଡ଼ୁ ଦେବାକୁ ଲାଗି ପଡ଼ିଲା।

ଘର ଝାଡ଼ୁ ଦେଇ ସାରି ସେ ଦେଖିଲା, ଅରୁଣା ନାହିଁ। ଅଧଘଣ୍ଟାକ ପରେ ଅରୁଣା ଝାଳନାଳ ହୋଇ ଲେଉଟିବାରୁ ସେ ପଚାରିଲା, "କୁଆଡ଼େ ଯାଇଥିଲ?"

"ପଡ଼ୋଶୀ ଘରେ କାମ କରୁଥିଲି ।"

"ମାନେ ?"

"ତମେ ରାଗିଗଲେ ଘର କାମତକ କରି ପକାଅ । ମୋ ପାଇଁ କିଛି ରହେ ନାହିଁ । ମୁଁ ରାଗିଗଲେ ପୁଣି କରିବ କ'ଣ ? ତେଣୁ ପଡ଼ୋଶୀ ଘରେ କାମ କରିଦେଇ ଆସିଲି ।" ଅରୁଣା ଉତ୍ତର ଦେଲା ।

"ସେଥିରେ ମୋ ଇଜ୍ଜତ ଯିବ ନାହିଁ ?"

"ନା, ମୁଁ କହିଛି ଅନ୍ୟ ଘରେ କାମ କରିବା ନିମନ୍ତେ ଠାକୁରଙ୍କ ପାଖରେ ମୁଁ ମାନସିକ କରିଛି । ତେଣୁ ସେମାନେ ଅସଲ କାରଣ ଜାଣନ୍ତି ନାହିଁ ।" ଅରୁଣା କହିଲା ।

ସଦାନନ୍ଦ ସ୍ତବ୍ଧ ହୋଇ ରହିଲା । ମାସଟିଏ ବିତିଗଲା । ସଦାନନ୍ଦ ଆଉ ରାଗି ନାହିଁ । ସନ୍ଥ ପୁଣି ଆସି ତାଙ୍କ ଘରେ ଅତିଥି ହେଲେ ଓ ଦୁହିଁଙ୍କୁ କହିଲେ, "ତମେ ଦୁଇଜଣ ଅତ୍ୟନ୍ତ ଭଲ ମଣିଷ । କିନ୍ତୁ ବାପା ସଦାନନ୍ଦ! ତମେ ଟିକିଏ ଧୀରସ୍ଥିର ଭାବରେ ବିଚାର କରିବା ଆବଶ୍ୟକ । ତମେ ଅରୁଣାକୁ ଏତେ ଭଲ ପାଅ ଯେ ସେ କାମ କରୁ, ଏହା ତମର ଇଚ୍ଛା ନୁହେଁ । ଅରୁଣା ତମକୁ ଏତେ ଭଲ ପାଏ ଯେ ତମେ ରାଗିଯାଇ କଷ୍ଟ କର, ଏକଥା ସିଏ ଚାହେଁନା । କିନ୍ତୁ କେହି କାହାରି ମନକଥା ବୁଝିବାକୁ ଚେଷ୍ଟା କରିନାହଁ !"

ଦୁହେଁ ନୀରବ ରହିଲେ । "ଆଚ୍ଛା, ଅରୁଣା, ତମ ବ୍ରତ ପୂର୍ଣ୍ଣ ହୋଇଛି । ଏଣିକି ସ୍ୱାଭାବିକ ଭାବରେ ଖିଆପିଆ କରିବ ।"

"ସ୍ୱାଭାବିକ ଭାବରେ ଖିଆପିଆ ମାନେ ?" ସଦାନନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ବାପା! ମାସେ କାଳ ଅରୁଣା ଓଳିଏ ମାତ୍ର ଖାଉଥିଲା । ତମେ ଏତକ ବି ବୁଝିନାହଁ ?" ସନ୍ଥ କହିଲେ ।

ସଦାନନ୍ଦ ଲଜ୍ଜିତ ହୋଇ ବସି ରହିଲା । ଯାହାହେଉ ଏହାପରେ ସଦାନନ୍ଦର ସ୍ୱଭାବ ଏତେ ବଦଳିଗଲା ଯେ ସମସ୍ତେ ଆଶ୍ଚର୍ଯ୍ୟ ହେଲେ ।





# ନାଟକ ଭିତରେ ନାଟକ

ଗୋବିନ୍ଦର ମନ ପଢ଼ାପଢ଼ି ପ୍ରତି ମୋଟେ ଯାଉ ନଥାଏ । ବୋଉ ତାକୁ ଯେତେ ବୁଝାଇଲେ ଯେ ସେ ମନଦେଇ ପାଠ ପଢ଼ୁ ନ ହେଲେ କିଛି କାମ ଧନ୍ଦା କରୁ, ସେ ଶୁଣିଲା ନାହିଁ । ବୋଉ ଏପରିକି ନିଜର ସୁନା ଗହଣାତକ ବିକି କରି ତାକୁ ପୁଞ୍ଜି ଯୋଗାଇ ଦେବାକୁ ପ୍ରସ୍ତୁତ ଥିଲେ, ଯଦି ସେ କିଛି ବେପାର କରନ୍ତା ।

କିନ୍ତୁ ଗୋବିନ୍ଦର ମନ ଅନ୍ୟ କଥାରେ ଥାଏ । ସେ ନାଟକରେ ଅଭିନୟ କରିବାକୁ ବଡ଼ ସୁଖ ମଣୁଥାଏ । ଗାଁରେ ସେଭଳି ବିଶେଷ ସୁବିଧା ସୁଯୋଗ ନଥାଏ । ତାକୁ କେହି କେହି କହୁଥାନ୍ତି, "ତୋର ଯେପରି ଗୁଣ, ସେଥିରେ ତୁ ସହରକୁ ଗଲେ କୌଣସି ନା କୌଣସି ନାଟକ ଦଳରେ ଜରୁର୍ ଯୋଗ ଦେଇ ପାରିବୁ ।"

ଦିନେ କାହାକୁ କିଛି ନ କହି ସେ ସହରକୁ ବାହାରି ଗଲା । ଘରୁ ଅଳ୍ପ କିଛି ପଇସା ପତ୍ର ନେଇ ଯାଇଥାଏ । ସେସବୁ ଶୀଘ୍ର ସରିଗଲା । ସହରରେ କୌଣସି ନାଟକ ଦଳରେ ଯୋଗ ଦେବା ଯେ ସହଜ ନୁହେଁ, ଏକଥା ବୁଝିବାକୁ ତାକୁ ଡେରି ହେଲାନାହିଁ ।

ସେ ଦୁଇଟି ପ୍ରତିଷ୍ଠିତ ଅପେରାଦଳର ଦ୍ୱାରସ୍ଥ ହେଲା । ସେମାନେ କିନ୍ତୁ ସିଧା ସିଧା ଜଣାଇଦେଲେ, ଅଭିଜ୍ଞତା ନଥିବା କୌଣସି ଯୁବକକୁ ସୁଯୋଗ ଦେବାକୁ ସେମାନେ ପ୍ରସ୍ତୁତ ନୁହନ୍ତି । ଗୋବିନ୍ଦ ମନେ ମନେ ବଡ଼ ଅପମାନ ଅନୁଭବ କଲା । ହତାଶ ବି ହେଲା ।

ଦୈବକୁ "ଶ୍ରୀକୃଷ୍ଣ ଅପେରା ଦଳ"ର ମାଲିକ ସଦାନନ୍ଦବାବୁଙ୍କ ସହ ତା'ର ଭେଟ ହୋଇଗଲା । ସଦାନନ୍ଦବାବୁ ନୂଆ କରି ସେ

**"ଅତି ଚତୁର; ନିଜ ଫାଶେ ପଡ଼ି ହୁଏ କାତର !"**



ଦଳ ଗଢ଼ିଥାନ୍ତି । ତାଙ୍କ ଦଳରେ ନାମଯାଦା ଅଭିନେତା ଅଭିନେତ୍ରୀ କେହି ନଥିଲେ । ସେ ନିଜେ ଅବଶ୍ୟ ଜଣେ ଦକ୍ଷ ଅଭିନେତା ଓ ନିର୍ଦ୍ଦେଶକ । ନୂଆ ଲୋକଙ୍କୁ ସେ ଅଭିନୟ ଶିଖାଇ କାମ ଚଳାଇ ନେବେ, ଏ ବିଶ୍ୱାସ ତାଙ୍କର ଥିଲା ।

ଗୋବିନ୍ଦର ଆଗ୍ରହ ଦେଖି ସେ ତାକୁ ନିଜ ଦଳରେ ଗ୍ରହଣ କଲେ । ସେତିକି ନୁହେଁ, ସେ ତାକୁ ନିଜ ଘରେ ବି ଆଶ୍ରୟ ଦେଲେ । ସେ ଜଣେ ପୂର୍ବତନ ଜମିଦାରଙ୍କର ଗୋଟିଏ ଘର ଭଡ଼ା ନେଇ ରହିଥାନ୍ତି ।

ସଦାନନ୍ଦବାବୁ ଯେଉଁ ସାମାଜିକ ନାଟକ ପାଇଁ କଳାକାରମାନଙ୍କୁ ତାଲିମ୍ ଦେଉଥାନ୍ତି, ସେଥିରେ ଗୋବିନ୍ଦକୁ ଗୋଟିଏ ବିଶେଷ ଭୂମିକା ମିଳିଗଲା । ତାହା ହେଲା ଘରୁ ପଳାଇ ଆସିଥିବା ଜଣେ ଯୁବକର ଚରିତ୍ର । ଯୁବକ ନିରୁଦ୍ଦିଷ୍ଟ ହୋଇଯିବାରୁ ତା' ବୋଉ ଦୁଃଖରେ ଘାଇଁ ପଡ଼ିଛନ୍ତି । ଯୁବକର ମାମୁଁ ଖୋଜି ଖୋଜି ଆସି ଯୁବକର ସନ୍ଧାନ ପାଇଛି ।

ଗୋବିନ୍ଦ ଅନ୍ୟ କଳାକାରମାନଙ୍କଠୁଁ ପଛରେ ପଡିଥିବା ଯୋଗୁଁ ସଦାନନ୍ଦବାବୁ ସବୁଦିନେ ତାକୁ ନିଜ ବସା ପଛପଟେ ତାଲିମ୍ ଦେଉଥିଲେ । ଦିନେ ଅପରାହ୍ଣରେ ସଦାନନ୍ଦ-ବାବୁ କହିଲେ, "ଆସ, ଦଶମିନିଟ ସଂଳାପ ଅଭ୍ୟାସ କରିନେବା । ତା'ପରେ ମୋତେ ବାହାରି ଯିବାକୁ ପଡ଼ିବ ।"

ଘର ପଛପଟକୁ ଯାଇ ସଂଳାପ ଆରମ୍ଭ ହେଲା । ସଦାନନ୍ଦବାବୁ ନିଜେ ମାମୁଁ ଭୂମିକା ନେଇଥାନ୍ତି ।

ମାମୁଁ : "ବାପା ! ବିଳମ୍ବ କଲେ ଅନୁତାପ କରିବୁ । ତୋ ମା'ଙ୍କ ଅବସ୍ଥା ମୁମୂର୍ଷୁ । ଘରକୁ ଫେରି ଚାଲ ।"

ଯୁବକ : "ମାମୁଁ ! ମୁଁ ମୋ ନିଷ୍ପତ୍ତିରେ ଅଟଳ । ମୁଁ କଦାପି ଘରକୁ ଫେରିବି ନାହିଁ । ଆପଣ ଯା'ନ୍ତୁ ! ନିଜର ତଥା ମୋର ସମୟ ନଷ୍ଟ କରନ୍ତୁ ନାହିଁ !"

ଆଉ ଦୁଇ ଚାରିପଦ ସଂଳାପ ପରେ ସଦାନନ୍ଦବାବୁ ଅନ୍ୟ କାର୍ଯ୍ୟରେ ଚାଲିଗଲେ ।



ଗୋବିନ୍ଦ ମନେ ମନେ ସଂଳାପ ଆବୃତ୍ତି କରୁଥାଏ । ହଠାତ୍ ସେ ଘର ଓ ଜମିଦାରଙ୍କ ଘର ଭିତରେ ଥିବା ପୁରୁଣା ପାଚେରିରେ ଦେଖାଦେଇଥିବା ଫାଙ୍କ ଭିତର ଦେଇ ତା' ଆଖି ସେ ପଟେ ଛିଡ଼ା ହୋଇଥିବା ଜଣେ ବୃଦ୍ଧଙ୍କ ଉପରେ ପଡ଼ିଲା । ପ୍ରଥମେ ସେ ଚମକି ପଡ଼ିଲା । ସେତେବେଳକୁ ସଞ୍ଜ ହୋଇ ଆସିଲାଣି । ବୃଦ୍ଧ ତାକୁ କିପରି ଅଦ୍ଭୁତ ମନେ ହେଲେ ।

ସେ ପଳାଇଯିବ କି ? ଏହି ଚିନ୍ତାରେ ସେ ପଛକୁ ଫେରି ଅନାଇଲା । ବୃଦ୍ଧ ତାକୁ ଏକ ଧ୍ୟାନରେ ଅନାଇଥାନ୍ତି ।

"ଶୁଣ ଯୁବକ!" ବୃଦ୍ଧ କହିଲେ ।

ବୃଦ୍ଧଙ୍କ ପଛରେ ସେ ବିଶାଳ କୋଠା ଅନ୍ଧାରୁଆ ପରିବେଶ ଭିତରେ ଭୂତକୋଠି ଭଳି ଦିଶୁଥାଏ । ଗୋବିନ୍ଦ ବାସ୍ତବିକ ଡରିଗଲା ।

"କିହୋ ଯୁବକ, ଡରୁଛ କି ? ଡରିବାର କାରଣ ନାହିଁ । ପାଖକୁ ଆସ ।" ବୃଦ୍ଧ କହିଲେ ।

ଗୋବିନ୍ଦ ଘୁଞ୍ଚି ଆସିଲା ।

"ତମେ ତମ ମାମୁଙ୍କ କଥା ଶୁଣି ଘରକୁ ଫେରିଯାଅ । ବୁଝିଲ ? ମା ମନରେ ଦୁଃଖ ଦେବା ଘୋର ଅପରାଧ ।" ବୃଦ୍ଧ କହିଲେ ।

ଗୋବିନ୍ଦ ବୁଝିଗଲା ଯେ ନାଟକର ସଂଳାପକୁ ବୃଦ୍ଧ ସତ ବୋଲି ଭାବିଛନ୍ତି । ସେ ବୁଦ୍ଧି ଖର୍ଚ୍ଚ କରି କହିଲା, "ମହାଶୟ, ଆପଣଙ୍କ ପରାମର୍ଶ ଗ୍ରହଣ କରନ୍ତି ଯେ, କିନ୍ତୁ ଗାଁ ବହୁତ ଦୂର । ମୋ ପାଖରେ ସେତେଦୂର ଯିବା ପାଇଁ ପଇସାପତ୍ର ନାହିଁ ।"

ବୃଦ୍ଧ ହସିଲେ ଓ କହିଲେ, "ତମ ମାମୁଁ ଯେତେବେଳେ ତମକୁ ନେବା ପାଇଁ ଆସିଛନ୍ତି, ତମପାଇଁ ବାଟଖର୍ଚ୍ଚ ବି ସେ ଦେବେ । ତେବେ ରୁହ, ମୁଁ ବି ସାହାଯ୍ୟ କରିବି ।" ଏହା କହି ବୃଦ୍ଧ କୋଠା ଭିତରକୁ ଯାଇ ଅଳ୍ପ ସମୟ ଭିତରେ ବାହାରି ଆସିଲେ ଏବଂ ଗୋବିନ୍ଦ ହାତକୁ ଗୋଟିଏ ଥଳିଟିଏ ବଢ଼ାଇ-ଦେଲେ । "କାଲି ସକାଳୁ ଚାଲିଯିବ ।" ଏହା କହି ସେ ଚାଲିଗଲେ ।



ଗୋବିନ୍ଦ ଥଳି ଖୋଲି ଦେଖିବା ବେଳକୁ ତହିଁ ଭିତରେ ପଚିଶ ଟଙ୍କା ରହିଛି । ସେ ନିଜ ବୁଦ୍ଧିକୁ ତାରିଫ୍ କଲା ଓ କୋଠରି ଭିତରକୁ ଆସି ଟଙ୍କା ଥଳି ତକିଆ ତଳେ ଲୁଚାଇଦେଲା ।

ଗୋବିନ୍ଦର ସନ୍ଦେହ ନଥିଲା ଯେ ସେ ବୁଢ଼ହିଁ ଜମିଦାର । ପରଦିନ ସେ ଖବର ନେଇ ବୁଝିଲା, ଜମିଦାର ବହୁତ ବଦାନ୍ୟ ବ୍ୟକ୍ତି । ତାଙ୍କଠାରୁ ଆଉ କିଛି ସୁବିଧା ଉଠାଇବା ନିମନ୍ତେ ତା'ର ଲୋଭ ହେଲା ।

ଉପରଓଳିକୁ ପୁଣି ବସାଘର ପଛପଟେ ସଦାନନ୍ଦବାବୁ ଓ ଗୋବିନ୍ଦ ଭିତରେ ଏକା ଘଟଣାର ପୁନରାବୃତ୍ତି ହେଲା । ସଦାନନ୍ଦବାବୁ ଚାଲିଗଲେ । ଗୋବିନ୍ଦ କୌତୁହଳୀ ହୋଇ ପାଚେରି ଫାଙ୍କ ଭିତର ଦେଇ ଅନାଇ ଦେଖିଲା, ସେପଟେ ଜମିଦାର ଠିଆ ହୋଇଛନ୍ତି ।

"କହୋ ଯୁବକ! ତମର ପରା ପଇସା ନଥିଲା ବୋଲି ଯାଇପାରୁ ନଥିଲ? ପୁଣି କ'ଣ ହେଲା?" ଜମିଦାର ବିରକ୍ତ ହୋଇ ପଚାରିଲେ ।

"ମହାଶୟ, ମୁଁ ଏଠାରେ ଗୁଡ଼ାଏ ଋଣ କରି ପକାଇଛି । ସେସବୁ ପରିଶୋଧ ନକରି ଯିବି କପରି କହିଲେ!" ଗୋବିନ୍ଦ ସଫେଇ ଦେଲା ।

"ଓଃ, ଏପରି କଥା! ଅବଶ୍ୟ ଋଣ ପରିଶୋଧ ନକରି ଯିବା ଅନୁଚିତ । କେତେ ଋଣ କରିଛ?" ଜମିଦାର ପଚାରିଦେଲେ ।

"ପ୍ରାୟ ଶହେ ଟଙ୍କା!"

"ହଉ, ରୁହ ।" ଏହା କହି ଜମିଦାର ଚାଲିଗଲେ । ଦଶମିନିଟ ପରେ ଫେରି ଆସି ସେ ଗୋବିନ୍ଦ ହାତକୁ ଥଳିଟିଏ ବଢ଼ାଇ ଦେଇ କହିଲେ, "ଆଜି ସନ୍ଧ୍ୟାରେ ଯାହାର ଯେତେ ପାଇବାର କଥା ସବୁ ଦେଇଦିଅ । କାଲି ସକାଳେ ଚାଲିଯାଅ ।"

"ଆପଣଙ୍କ ନିର୍ଦ୍ଦେଶ ମାନିବି, ଆଜ୍ଞା ।"

ଗୋବିନ୍ଦ ନିଜ କୋଠରି ଭିତରକୁ ଆସି ଦେଖିଲା, ଥଳିରେ ଶହେ ଦଶଟଙ୍କା ଅଛି । ସେ ପୁଣି ନିଜକୁ ବାହାବା ଦେଲା । ଆଉ ଥରେ କୌଣସି ମତେ ବୁଢ଼ାଠୁଁ ଆଉ କିଛି



ଆଦାୟ କରି ପାରିଲେ ବଡ଼ ଭଲ ହୁଅନ୍ତା ବୋଲି ସେ ଭାବିଲା। କିନ୍ତୁ କିଛି ଉପାୟ ଚିନ୍ତା କରି ପାରୁ ନଥାଏ।

ଗୋବିନ୍ଦ ନିଜେ ନିଜେ ବହୁତ ହସିଲା। ବୃଦ୍ଧଙ୍କୁ ପ୍ରଥମ ଥର ଦେଖି ସେ କେମିତି ଡରି ଯାଇଥିଲା, ସେକଥା ଭାବି ମଜା ଅନୁଭବ କଲା। ନିଜେ ଯେ ଜଣେ ଅତ୍ୟନ୍ତ ବୁଦ୍ଧିମାନ ଯୁବକ, ଏ ବିଷୟରେ ତା'ର ଆଉ ସନ୍ଦେହ ରହିଲା ନାହିଁ। ସହରକୁ ଆସି ଇଏତ ସାଫଲ୍ୟର ଆରମ୍ଭ ମାତ୍ର! ଭବିଷ୍ୟତରେ ନିଜ ବୁଦ୍ଧି ବଳରେ ଆହୁରି କେତେ କାମ ଏମିତି ହାସଲ କରିବ, ସେ କଥା ଭାବି ସେ ବେଶ୍ ଶିହରଣ ଅନୁଭବ କଲା।

ପରଦିନ ଉପରଓଳି ସଦାନନ୍ଦବାବୁ ଗୋବିନ୍ଦକୁ ବାଡ଼ି ପଛପଟକୁ ନେଇଗଲା-ବେଳେ କହିଲେ, "ଆଜି ପରବର୍ତ୍ତୀ ଦୃଶ୍ୟର ଆବୃତ୍ତି କରିବା। ଅବଶ୍ୟ ତମର ଏଥିରେ ବିଶେଷ କିଛି କରିବାର ନାହିଁ। ଖାଲି ମୁହଁରେ ବିଷାଦର ଅଭିବ୍ୟକ୍ତି ଦେବାର କଥା।"

ବାଡ଼ି ଭିତରେ ପହଞ୍ଚି ସଦାନନ୍ଦବାବୁ ଆବୃତ୍ତି କଲେ, "ବାପା! ମୋ କଥା ମାନିଲୁ ନାହିଁ, ଘରକୁ ଗଲୁ ନାହିଁ! ଶେଷଥର ପାଇଁ ତୋତେ ଦେଖିବେ ବୋଲି କେତେ ଆଶା କରି ହତାଶ ହୋଇ ତୋ' ମା ଶେଷ ନିଃଶ୍ୱାସ ତ୍ୟାଗ କଲେ! ତୋହରି ଯୋଗୁଁ ମୁଁ ଦେଖା ଭଲ ମୋର ଭଉଣୀଙ୍କୁ ହରାଇଲିରେ ହତଭାଗା!"

"କ'ଣ ହେଲା, ସେ ଯୁବକ ଆଜିବି ଘରକୁ ଗଲାନାହିଁ?" ଏହା କହି ଜମିଦାର ଭଙ୍ଗା ପାଚେରି ଟପି ପଶି ଆସିଲେ। ସଦାନନ୍ଦବାବୁ କାବା ହୋଇ ଚାହିଁ ରହିଲେ। ଗୋବିନ୍ଦର ମୁହଁ ଶେତା ପଡ଼ିଗଲା।

"ତମେ ଯଦି ନ ଯିବ, ମୋଠୁଁ ଟଙ୍କା ନେଲ କାହିଁକି?" ଜମିଦାର ଧମକ ଦେଲେ।

ଗୋବିନ୍ଦ କିଛି କହି ପାରିଲା ନାହିଁ। "ଜବାବ୍ ଦିଅ!" ଜମିଦାର ଧମକ ଦେଇ କହିଲେ।

"ଆଜ୍ଞା, ଏହା ଅଭିନୟ, ନାଟକ ।..." ସଦାନନ୍ଦବାବୁ କୈଫିୟତ୍ ଦେଲେ ।

"ନାଟକ ? ତେବେ ତ ଏ ଯୁବକ ମୋତେ ପ୍ରତାରିତ କରିଛି !" ଏହା କହି ଜମିଦାର ତାଙ୍କର ଦୁଇ ପରିଚାରକଙ୍କୁ ଡାକି ପକାଇଲେ । ସେମାନେ ଲଠି ଧରି ଦୌଡ଼ି ଆସିଲେ । "ଏ ଯୁବକର କୋଠରି ତଲାସ୍ କରି ଟଙ୍କାତକ ଉଦ୍ଧାର କର ।"

ପରିଚାରକମାନେ ଯାଇ କୋଠରି ଭିତରୁ ଦୁଇଟିଯାକ ଟଙ୍କା ଥଳି ଉଦ୍ଧାର କଲେ ।

"ଆଜ୍ଞା, କଥା କ'ଣ ମୁଁ କିଛି ଜାଣେ ନାହିଁ । ଆପଣ ମୋତେ ଭୁଲ୍ ବୁଝିବେ ନାହିଁ ।" ସଦାନନ୍ଦବାବୁ ଜମିଦାରଙ୍କୁ ନମ୍ର ଭାବରେ କହିଲେ ।

"ନାହିଁ ବାବୁ, ତମକୁ କାହିଁକି ଭୁଲ ବୁଝିବି ? କିନ୍ତୁ କାହାକୁ ଘରେ ଆଶ୍ରା ଦେବା ପୂର୍ବରୁ ତା' ସ୍ୱଭାବ ଚରିତ୍ର ବୁଝିବା ତମର କର୍ତ୍ତବ୍ୟ ।" ଜମିଦାର କହିଲେ ।

"ମୋତେ କ୍ଷମା କରିବେ । ସେ ଦିଗରେ ବାସ୍ତବିକ ମୋର ତ୍ରୁଟି ହୋଇଛି ବୋଲି ମୁଁ ମାନୁଛି ।" ସଦାନନ୍ଦବାବୁ କହିଲେ ।

ଜମିଦାର ତାଙ୍କ ଆଡ଼େ ଅନାଇ ଥରେ ହସିଦେଇ ଚାଲିଗଲେ ।

ଜମିଦାର ଚାଲିଯିବା ପରେ ସଦାନନ୍ଦବାବୁ ଗୋବିନ୍ଦକୁ କହିଲେ, "ବାବୁ, ତମର ସ୍ୱଭାବ ଚରିତ୍ର ଜଣା ପଡିଗଲା । ତମକୁ ଆଉ କ'ଣ କହିବି, ତମେ ଏଠାରୁ ଚାଲିଯାଅ । ଯିଏ ଅନ୍ୟର ସରଳତାର ସୁଯୋଗ ନିଏ, ତାକୁ ମୁଁ ଚଳାଇ ପାରିବି ନାହିଁ । କାରଣ ମୁଁ ବି ସରଳିଆ ମଣିଷ । ତମେ ନାଟକ ଭିତରେ ପୁଣି ନାଟକ କରି ପାରିବା ଲୋକ ।"

ଗୋବିନ୍ଦ କାନମୁଣ୍ଡା ଆଉଁସି ବାହାରିଗଲା କୁଆଡ଼େ ନ ଅଟକି ଗାଁ ମୁହାଁ ଚାଲିଲା । ବୋଉଙ୍କୁ କ୍ଷମା ମାଗି କିଛି କାମଧନ୍ଦା କରିବା ପାଇଁ ସ୍ଥିର କଲା ।





# ମହାଜନଙ୍କ ବୈରାଗ୍ୟ

ଶ୍ରୀବନଗରରେ ଥିଲେ ଜଣେ ବରିଷ୍ଠ ମହାଜନ । ସେ ଅମାପ ସମ୍ପଦର ଅଧିକାରୀ ଥିଲେ । କିନ୍ତୁ ସଙ୍ଗେ ସଙ୍ଗେ ସେ ଥିଲେ ଭୀଷଣ କୃପଣ ।

ଜୀବନରେ ସେ ବହୁଲୋକଙ୍କୁ ମାଲି-ମକଦ୍ଦମାରେ ପକାଇ ସର୍ବସ୍ୱାନ୍ତ କରିଥିଲେ । ପଛରେ ଲୋକେ ତାଙ୍କୁ ଯେପରି ଭାବରେ ଗାଳିଗୁଲଜ କରୁଥିଲେ, ସେସବୁ ବି ସେ ଶୁଣୁଥିଲେ । ଖାଲି ଗୋଟାଏ ଶବ୍ଦକୁ ତାଙ୍କର ଡର ଥିଲା । ସେ ଶବ୍ଦ ହେଲା "ପାପୀ" । ସତରେ ପାପ ଯୋଗୁଁ ତାଙ୍କୁ କଷ୍ଟ ପାଇବାକୁ ପଡ଼ିବ କି ?

ଥରେ ଜଣେ ସାଧୁ ତାଙ୍କ ଘରକୁ ଆସିଥାନ୍ତି । ସାଧୁଙ୍କୁ ମହାଜନ ପଚାରିଲେ, "ସାଧୁଜୀ ! ପାପ କ'ଣ ? ସେଥିରୁ ମୁକ୍ତି ମିଳିବ କିପରି ?"

"ପାପ ଅନେକ ପ୍ରକାର । ତମ କ୍ଷେତ୍ରରେ ତମେ ଏତେ ସମ୍ପଦ ଥାଇ ଯଦି କାହାରି ଉପକାର ନ କରିବ, ଆର୍ତ୍ତଙ୍କୁ ଦାନ ନ ଦେବ, ତାହାହିଁ ହେବ ପାପ । ବୁଝିଲ ?" ସାଧୁ କହିଲେ ।

"ବୁଝିଲି ଆଜ୍ଞା ।"

ସାଧୁ ଚାଲିଗଲେ । ମହାଜନ ଆରାମ ଚୌକିରେ ବସି ଆଖି ବୁଜି ଭାବୁଥାନ୍ତି, ଜଣେ ଗରୀବ ବ୍ରାହ୍ମଣ ଆସି ତାଙ୍କ ଆଗରେ ଠିଆ ହେଲେ । ସିଏ ସାଧୁ ଓ ମହାଜନଙ୍କ ଭିତରେ କଥୋପକଥନ ଶୁଣିଥିଲେ । ଆଶା କରିଥିଲେ, ମହାଜନ ତାଙ୍କୁ ଦେଖିଲେ ଦାନ ଆରମ୍ଭ କରିଦେବେ । ମହାଜନଙ୍କ ବେକରେ ସୁନାହାର ଝୁଲୁଥିଲା । ହାତ ଆଙ୍ଗୁଠିମାନରେ ହୀରା ମୁଦିମାନ ଶୋଭା ପାଉଥିଲା । ସେଥିରୁ ଗୋଟାଏ ସେ ଦେଇ ଦେବେକି ? ବ୍ରାହ୍ମଣ ଭାବୁଥିଲେ ।

ବ୍ରହ୍ମଦତ୍ତ

"କୁଆଡ଼େ ଆସିଲ ?" ମହାଜନ ପଚାରିଲେ ।

"ବାବୁ, କିଛି ଦାନ ମିଳୁ!" ବ୍ରାହ୍ମଣ କହିଲେ ।

"ଦାନ ? ଆଚ୍ଛା, ଆଗାମୀ କାଲି ଆସ ।" ମହାଜନ କହିଲେ ।

ବ୍ରାହ୍ମଣ କହିଲେ, "ହଉ ଆଜ୍ଞା ।" ପରଦିନ ଜମିଦାର ଦାନସମ୍ଭାର ପ୍ରସ୍ତୁତ କରି ରଖିଥିବେ, ଏଥିରେ ତାଙ୍କର ସନ୍ଦେହ ନଥିଲା ।

ବ୍ରାହ୍ମଣ ବହୁ ଆଶା କରି ପରଦିନ ଆସି ଦେଖିଲେ ମହାଜନଙ୍କ ଦେହରେ ମୂଲ୍ୟବାନ ବେଶଭୂଷା ନାହିଁ; ଅଳଙ୍କାର ବି ନାହିଁ ।

"କୁଆଡ଼େ ଆସିଲ ?" ମହାଜନ ପଚାରିଲେ ।

"ଆଜ୍ଞା, ଦାନ ଦେବେ ପରା ?"

"ଦାନ ଦେବାକୁ ମୋର ଆଉ ଅଛି କ'ଣ ? ଦେଖୁନାହିଁ ମୋ ବେଶ ? ମୁଁ ସନ୍ନ୍ୟାସ ଗ୍ରହଣ କରିସାରିଲିଣି ।" ମହାଜନ କହିଲେ ।

"ସତେ ? ତେବେ ଆପଣଙ୍କ ବିପୁଳ ସମ୍ପତ୍ତି କୁଆଡ଼େ ଗଲା ?"

"ମୁଁ ମଲେ ସମ୍ପତ୍ତି ଯୁଆଡ଼େ ଯାଆନ୍ତା, ସନ୍ନ୍ୟାସ ଗ୍ରହଣ କଲାରୁ ବି ସେଇଆଡ଼େ ଗଲା । ଅର୍ଥାତ୍ ମୋ ପୁଅ ପାଇଲେ!" ମହାଜନ ବୁଝାଇ ଦେଲେ ।

"ତେବେ ମୁଁ ଆପଣଙ୍କ ପୁଅଙ୍କୁ ମାଗିବି ।" ବ୍ରାହ୍ମଣ କହିଲେ । ମହାଜନ ଅଳ୍ପ ହସିଲେ ।

ବ୍ରାହ୍ମଣ ଯାଇ ମହାଜନଙ୍କ ପୁଅଙ୍କୁ ଭେଟି ଦାନ ମାଗିଲେ ।

"ପିତୃ ଆଜ୍ଞା ପାଳନ ଠିକ୍ ନା ଭୁଲ୍ ?" ମହାଜନଙ୍କ ପୁଅ ପଚାରିଲେ ।

"ଠିକ୍ ।" ବ୍ରାହ୍ମଣ କହିଲେ ।

"ବାପାଙ୍କ ପାଖରୁ ପ୍ରାପ୍ତ ସମ୍ପତ୍ତିରୁ ମୁଁ ଗୋଟାଏ ପଇସା ବି କାହାକୁ ଦେବି ନାହିଁ ବୋଲି ବାପା ଶପଥ କରାଇ ନେଇଛନ୍ତି ।" ମହାଜନଙ୍କ ପୁଅ ପ୍ରକାଶ କଲେ ।

ବ୍ରାହ୍ମଣ ଦୀର୍ଘଶ୍ୱାସ ତ୍ୟାଗ କରି ଫେରିଗଲେ ।





# ବିଷ୍ଣୁ ପୁରାଣ

## ୧୭. ଶ୍ରୀକୃଷ୍ଣଙ୍କ ବିଜୟ

ଶ୍ରୀକୃଷ୍ଣଙ୍କର ମହତ୍ତ୍ୱ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ତାଙ୍କର ଶତ୍ରୁ ସଂଖ୍ୟା ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଜରାସନ୍ଧ ଓ ଶିଶୁପାଳଙ୍କ ଦଳରେ କେତେକ ଦୁଷ୍ଟ ରାଜା ଯୋଗ ଦେଲେ । ପୌଣ୍ଡ୍ରକ ନାମକ କରୁଷ ଦେଶର ରାଜା ନିଜ ଦେହରେ କାଷ୍ଠ ନିର୍ମିତ ଦୁଇଟି ହାତ ଓ ସେଥିରେ ଶଙ୍ଖ, ଚକ୍ର ଧାରଣ କରି ନିଜକୁ ବିଷ୍ଣୁଙ୍କର ଅବତାର ବୋଲାଇଲେ । ଶିଶୁପାଳର ସାନଭାଇ ବିମାନ ଉପରେ ଥାଇ ଆକାଶରୁ କୃଷ୍ଣଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କରୁଥାଏ । ପୂର୍ବଦେଶରେ ନାରକାସୁର ନିରୀହ ରାଜାମାନଙ୍କ ଉପରେ ଓ କୃଷ୍ଣଙ୍କ ରାଜ୍ୟ ଉପରେ ପ୍ରଚଣ୍ଡ ଭାବରେ ଆକ୍ରମଣ କରୁଥାଏ । ଦକ୍ଷିଣରେ ବାଣାସୁର ମଧ୍ୟ ସୋନପୁରରେ ନିଜର ରାଜଧାନୀ ବନାଇ ରାକ୍ଷସରାଜ୍ୟ ବିସ୍ତାର କରିବାକୁ ଲାଗିଲା ।

କାଲାନ୍ତକ ନାମକ ଏକ ଦୁର୍ଦ୍ଧର୍ଷ ରାକ୍ଷସ ରାଜା ଥାଏ । ଜ୍ୟୋତିଷମାନେ କହିଥାନ୍ତି ତାକୁ କେହି ମାରିପାରିବେ ନାହିଁ । ସେ ମ୍ଲେଚ୍ଛ ସୈନ୍ୟମାନଙ୍କ ସାହାଯ୍ୟରେ ଦାରୁଣ ହତ୍ୟାକାଣ୍ଡ ଓ ଲୁଣ୍ଠନ କରି ଚାଲିଥାଏ, ମନ୍ଦିର ସବୁ ଭାଙ୍ଗି ପକାଉଥାଏ ଓ ଦେବଦେବୀଙ୍କ ମୂର୍ତ୍ତି ସବୁ ଧ୍ୱଂସ କରି ପକାଉଥାଏ । ସେ ସର୍ବଦା ଚେଷ୍ଟା କରୁଥାଏ କୃଷ୍ଣଙ୍କୁ ମାରିବାକୁ । ଅନେକ ଦେଶ ଲୁଣ୍ଠନ କରି କରି ଶେଷରେ ସେ ଯାଇ ଗାନ୍ଧାର ଦେଶରେ ପହଞ୍ଚିଲା । ସେଠାରେ ଗୋଟିଏ ମନ୍ଦିରରେ ଥିବା ମୋହିନୀ ମୂର୍ତ୍ତି ଦେଖି ସେ ମୁଗ୍‌ଧ ହୋଇଗଲା । ସେ ମୂର୍ତ୍ତି



ଶ୍ରୀକୃଷ୍ଣ ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଡାକି ନିର୍ମାଣ କରାଇଥିଲେ ଓ ତା' ଭିତରେ ନିଜ ଯୋଗମାୟାର ଶକ୍ତି ରଖିଥିଲେ । ସେହି ସୁନ୍ଦରୀ ମୂର୍ତ୍ତିକୁ ସେ ନେଇଯାଇ ଅନ୍ତଃପୁରରେ ରଖିଲା ଓ ସର୍ବଦା ଭାବୁଥାଏ ଯଦି ଏହାକୁ କେହି ଜୀବନ୍ତ କରି ପାରିବ ।

ଦିନେ ରାତିରେ ସେ ଶୋଇଛି; ହଠାତ୍ ଘୁଙ୍ଗୁରର ମୃଦୁ ତାଳରେ ଉଠିପଡି ଦେଖିଲା ସେ ମୂର୍ତ୍ତିଟି ଜୀବନ୍ୟାସ ପାଇ ନାଚୁଛି । ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ଯାଇ ନୃତ୍ୟରତା ନାରୀଟିକୁ ଆଲିଙ୍ଗନ କରନ୍ତେ ନାରୀଟି ପୁଣି ପଥରରେ ପରିଣତ ହୋଇଗଲା ଏବଂ ସେଇ ପଥରର ବାହୁବନ୍ଧନ ଭିତରେ ଛଟପଟ ହୋଇ ରାକ୍ଷସ ମରିଗଲା । କିନ୍ତୁ ତା' ଛଟପଟ ଭିତରେ ମୂର୍ତ୍ତିର ହାତଟିଏ ଭାଙ୍ଗିଗଲା । ଏବେ ସୁଦ୍ଧା ସେ ଦେଶରେ ଭଙ୍ଗାହାତ ମୂର୍ତ୍ତିଟି ପୂଜା ପାଉଛି । ତା' ପରେ କୃଷ୍ଣ ଯାଇ ଅନ୍ୟ ରାଜାମାନଙ୍କ ସହିତ ଯୁଦ୍ଧ କରି ପରାସ୍ତ କଲେ । ତତ୍ ସଙ୍ଗେ ସଙ୍ଗେ ଏକ ଆଗ୍ନେୟଗିରିର ଅଚାନକ ଅଗ୍ନି ଉଦ୍‌ଗିରଣ ଫଳରେ ସମଗ୍ର ରାକ୍ଷସ ରାଜ୍ୟ ଧ୍ୱଂସ ପାଇଲା ।

ଏହିପରି ଭାବରେ ପଶ୍ଚିମ ଦିଗରେ ମ୍ଳେଚ୍ଛ ଓ ଯବନଙ୍କ ରାଜତ୍ୱ ଧ୍ୱଂସ ପାଇଲା । କିନ୍ତୁ ପୂର୍ବଦିଗରେ ପ୍ରାକ୍‌ଜ୍ୟୋତିଷପୁରରେ ନାରକାସୁରର ଅତ୍ୟାଚାର ଦିନକୁ ଦିନ ବୃଦ୍ଧି ପାଇଲା । ସେ ଅସୁରସେନାଙ୍କୁ ନେଇ ଦେବଲୋକ ଜୟ କରିଥିଲା । ସେ ଦେବମାତା ଅଦିତିଙ୍କଠାରୁ କର୍ଣ୍ଣକୁଣ୍ଡଳ ନେଇ ଯାଇଥିଲା; ଋଷି, ମୁନି ଓ ସାଧୁ ସଜ୍ଜନଙ୍କ ଉପରେ ଅତ୍ୟାଚାର କରିବାକୁ ଲାଗିଲା । ରାଜାମାନଙ୍କୁ ମାରି ସେ ଷୋହଳ ହଜାର ରାଜକନ୍ୟାଙ୍କୁ ବନ୍ଦୀ କରି ରଖିଥିଲା ସେମାନଙ୍କୁ ବିବାହ କରିବ ବୋଲି । ତା'ର ଅତ୍ୟାଚାରରୁ ତ୍ରାହି ପାଇବାକୁ ଋଷିମୁନିମାନେ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ସେମାନଙ୍କୁ ଅଭୟ ଦାନ ଦେଲେ । ପରେ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ନେଇ ଯୁଦ୍ଧ କରିବାକୁ ଗଲେ । ଶ୍ରୀକୃଷ୍ଣ ଯୁଦ୍ଧ କରି କରି କ୍ଳାନ୍ତ ହୋଇଥିବା ବେଳେ ନାରକାସୁର ଆକ୍ରମଣ କଲା । ସତ୍ୟଭାମାଙ୍କ ତୀକ୍ଷ୍ଣ ଶର ଦ୍ୱାରା ଆଘାତ ପାଇ ସେ



ରଥଚ୍ୟୁତ ହୋଇ ଭୂମିରେ ପଡ଼ିଲା । ତଦ୍ୱାରା ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପୁଣି ଉଠିପଡ଼ି ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କଲା । ଅବଶେଷରେ ଶ୍ରୀକୃଷ୍ଣ ଚକ୍ର ଦ୍ୱାରା ତା'ର ଶିରଚ୍ଛେଦ କଲେ ।

ନାରକାସୁରର କନ୍ଥାମ୍ବଣ୍ଡ ଶ୍ରୀକୃଷ୍ଣଙ୍କୁ ବନ୍ଧୁ ରୂପରେ ଚହିଁ ପ୍ରାର୍ଥନା କଲା କି ଯେପରି ତା'ର ମୃତ୍ୟୁ ଦିବସ ସମସ୍ତେ ପାଳନ କରନ୍ତି । ସେହିଦିନକୁ ମନେ ରଖିବା ପାଇଁ ଦୀପାବଳୀ ପୂଜା ଉତ୍ସବ ଆରମ୍ଭ ହେଲା । ତା'ପରେ ଶ୍ରୀକୃଷ୍ଣ ନାରକାର ପୁତ୍ର ଭଗଦତ୍ତଙ୍କୁ ସେଠାରେ ରାଜା କରାଇଲେ ଓ ଦେବମାତା ଅଦିତିଙ୍କ କୁଣ୍ଡଳ ଆଣି ଦ୍ୱାରକା ଫେରି ଆସିଲେ ।

ଦିନେ କୃଷ୍ଣ ରୁକ୍ମିଣୀଙ୍କ ସହିତ ବସି କଥା ହେଉଥିଲେ ନାରଦ ପାରିଜାତ ଫୁଲଟିଏ ସ୍ୱର୍ଗରୁ ତୋଳି ଆଣି କୃଷ୍ଣଙ୍କୁ ଦେଲେ । କୃଷ୍ଣ ସେଇଟି ରୁକ୍ମିଣୀକୁ ଦେଲେ । ଏଇ ଖବର ପାଇ ସତ୍ୟଭାମା ଖୁବ୍ ରାଗିଗଲେ । ପରେ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ କହିଲେ, "ସ୍ୱର୍ଗରୁ ପାରିଜାତ ଫୁଲର ଗଛଟି ଆଣି ତୁମ ବଗିଚାରେ ଲଗାଇ ଦେବି ।" ଏହାର କିଛିଦିନ ପରେ ଅଦିତିଙ୍କର କୁଣ୍ଡଳ ଫେରାଇବା ପାଇଁ କୃଷ୍ଣ ସତ୍ୟଭାମାଙ୍କୁ ନେଇ ସ୍ୱର୍ଗକୁ ଗଲେ । ସେଠାରେ କୁଣ୍ଡଳ ଅଦିତିଙ୍କୁ ପ୍ରତ୍ୟର୍ପଣ କରି ସେ ନନ୍ଦନବନକୁ ଗଲେ ଓ ପାରିଜାତ ବୃକ୍ଷ ଧରି ଲେଉଟିଲେ । ଇନ୍ଦ୍ର ରାଗିଯାଇ ବଜ୍ରାୟୁଧ ନିକ୍ଷେପ କରନ୍ତେ ତାହା ଗରୁଡ଼ ଦେହରେ ବାଜିଲା । ଗରୁଡ଼ ଇନ୍ଦ୍ରଙ୍କୁ ସମ୍ମାନ ଦେଖାଇ ନିଜ ପକ୍ଷରୁ ଛୋଟ ପରଟିଏ କାଢ଼ି ପକାଇ ଦେଲେ ଓ କହିଲେ, "କୃଷ୍ଣ ଯେତେଦିନ ପୃଥିବୀରେ ରହିବେ, ପାରିଜାତ ମଧ୍ୟ ସେଇଠି ରହିବ ।"

ଶ୍ରୀକୃଷ୍ଣଙ୍କର ପ୍ରଦ୍ୟୁମ୍ନ ଆଦି ଅନେକ ପୁତ୍ର ହେଲେ । ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ବାଣାସୁରର କନ୍ୟା ଉଷାକୁ ସ୍ୱପ୍ନରେ ବାରମ୍ବାର ଦେଖିଲେ ଓ ମନ ମଧ୍ୟରେ ତାକୁହିଁ ସର୍ବଦା ଭାବିଲେ । ଉଷା ମଧ୍ୟ ଅନିରୁଦ୍ଧଙ୍କୁ ସ୍ୱପ୍ନରେ ବାରମ୍ବାର ସ୍ୱାମୀ ରୂପରେ ଦେଖୁଥାଏ । ଉଷାର ସଖୀ ତନ୍ତ୍ର ବଳରେ ଅନିରୁଦ୍ଧଙ୍କୁ ଉଷାର ଅନ୍ତଃପୁରକୁ ନେଇ ଆସିଲା ଓ ସେଠାରେ ଦୁହିଁଙ୍କର ମିଳନ ହେଲା, ଏ ଖବର



ପାଇ ବାଣାସୁର ତତ୍‌କ୍ଷଣାତ୍ ଅନ୍ତଃପୁରକୁ ଯାଇ ଅନିରୁଦ୍ଧଙ୍କୁ ବନ୍ଦୀ କଲା । ଏ ସମ୍ବାଦ ପାଇ ଶ୍ରୀକୃଷ୍ଣ ଯାଦବ ସେନାବାହିନୀ ସହ ଆସି ବାଣାସୁରର ରାଜ୍ୟ ଆକ୍ରମଣ କଲେ । ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ବାଣାସୁର ହାରିଗଲା । ତା'ର ଏକହଜାର ହାତରୁ ଦୁଇଟି ମାତ୍ର ହାତ ରଖି ଅନ୍ୟ ସବୁ ଶ୍ରୀକୃଷ୍ଣ କାଟି ଦେଲେ । ପରେ ଅନ୍ତଃପୁରକୁ ଯାଇ ଅନିରୁଦ୍ଧଙ୍କୁ କାରାମୁକ୍ତ କରି ଉଷା ସହିତ ବିବାହ କରାଇଲେ ।

ଖାଣ୍ଡବବନ ଦହନ କାଳରେ ଶ୍ରୀକୃଷ୍ଣ ଓ ଅର୍ଜୁନ ମାୟାଦାନବଙ୍କୁ ସେଥିରୁ ରକ୍ଷା କରିଥିଲେ । କୃତଜ୍ଞତା ସ୍ୱରୂପ ସେ କଥା ଦେଇଥିଲା ଯୁଧିଷ୍ଠିରଙ୍କ ପାଇଁ ସେ ଏକ ଅପୂର୍ବ ସଭାଗୃହ ବନାଇ ଦେବ । ଅଗ୍ନିଦେବ ଖାଣ୍ଡବବନ ତୃପ୍ତିର ସହିତ ଭୋଜନ କରି ଅର୍ଜୁନଙ୍କୁ ଗାଣ୍ଡିବ ଧନୁ, ଦେବଦତ୍ତ ଶଙ୍ଖ ଓ ଅକ୍ଷୟ ତୂଣୀର ଦାନ କରିଥିଲେ । ଶ୍ରୀକୃଷ୍ଣଙ୍କୁ ପାଞ୍ଚଜନ୍ୟ ଶଙ୍ଖ ଓ ଅନ୍ୟ କେତେକ ଅସ୍ତ୍ରଶସ୍ତ୍ର ଦାନ କରିଥିଲେ ।

ରାଜା ଯୁଧିଷ୍ଠିର ରାଜସୂୟ ଯଜ୍ଞ କରାଇଲେ । ସେତେବେଳେ ଅନେକ ରାଜାଙ୍କୁ ନିଜର ଅଧୀନକୁ ଆଣିବାର ପ୍ରଶ୍ନ ଉଠିଲା । ଶ୍ରୀକୃଷ୍ଣ କହିଲେ କି ଜରାସନ୍ଧ ଅନେକ ରାଜାଙ୍କୁ ବନ୍ଦୀ କରି ରଖିଛି । ଏବେ ଜରାସନ୍ଧଙ୍କୁ କୌଣସି ମତେ ମାରିଦେଲେ ସେହି ରାଜାମାନେ ମୁକ୍ତ ହେବେ ଓ ସାରା ଜୀବନ କୃତଜ୍ଞ ହୋଇ ଅଧୀନତା ସ୍ୱୀକାର କରି ରହିବେ ।

ତେଣୁ ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନ ତିନିଜଣ ତିନି ବ୍ରାହ୍ମଣର ଛଦ୍ମବେଶରେ ଯାଇ ଜରାସନ୍ଧର ରାଜନଗରରେ ପହଞ୍ଚିଲେ । ଜରାସନ୍ଧ, ଦୁର୍ଯ୍ୟୋଧନ, ବକାସୁର, କୀଚକ ଓ ଭୀମସେନ ସମାନ ଭାବରେ ଶକ୍ତିଶାଳୀ ଥିଲେ । ଶ୍ରୀକୃଷ୍ଣ ଜାଣିଥିଲେ ଯେ ଜଣେହିଁ ଅନ୍ୟ ଚାରିଜଣଙ୍କୁ ବଧ କରିବ । ଆଗରୁ ଭୀମହିଁ ବକାସୁରକୁ ମାରିଥିଲେ । ତେଣୁ ଭୀମ ହାତରେହିଁ ସେ ମରିବ ।

ଜରାସନ୍ଧ ସେମାନଙ୍କୁ ବ୍ରାହ୍ମଣ ଭାବି ଭୋଜନ ଦେବାକୁ ପ୍ରସ୍ତାବ ଦିଅନ୍ତେ, ଶ୍ରୀକୃଷ୍ଣ ତତ୍‌କ୍ଷଣାତ୍ କହିଲେ, "ଭୋଜନ ବଦଳରେ




ଆମକୁ ଯୁଦ୍ଧ ଦାନ ଦିଅ, ଅର୍ଥାତ୍ ଆମ ଭିତରୁ ଜଣକ ସହିତ ଯୁଦ୍ଧ କର । ଏହି ଇଚ୍ଛାରେ ଆମେ ତୁମ ପାଖକୁ ଆସିଛୁ ।"

ସେତେବେଳେ ଜରାସନ୍ଧ ସେମାନଙ୍କୁ ଚିହ୍ନି ପାରି କହିଲା, "ହେ କୃଷ୍ଣ, ତମେ କେତେଥର ମୋତେ ଡରି ଯୁଦ୍ଧରୁ ପଳାଇଛ । ମୋତେ ଡରିହିଁ ବନ୍ଧୁ ଓ ପରିବାରବର୍ଗ ନେଇ ଦ୍ୱାରକାକୁ ଚାଲିଗଲ । ତେଣୁ ତୁମ ସହିତ ଯୁଦ୍ଧ କରିବି ନାହିଁ । ଅର୍ଜ୍ଜୁନ ନିହାତି ଦୁର୍ବଳ ଦେଖାଯାଉଛି, ତା' ସହିତ ମଧ୍ୟ ଯୁଦ୍ଧ କରିବି ନାହିଁ । କେବଳ ଭୀମସେନହିଁ ମୋ ସହିତ ମଲ୍ଲଯୁଦ୍ଧ କରିବାକୁ ଯୋଗ୍ୟ ।"

ତା'ପରେ ଭୀମସେନ ଓ ଜରାସନ୍ଧଙ୍କ ମଧ୍ୟରେ ଭୀଷଣ ମୁଷ୍ଟିଯୁଦ୍ଧ ଓ ମଲ୍ଲଯୁଦ୍ଧ ଆରମ୍ଭ ହେଲା । ଦୁହେଁ ସମାନ ବୀର । କେହି କାହାକୁ ଛାଡୁ ନାହାନ୍ତି । ଅବଶେଷରେ ଶ୍ରୀକୃଷ୍ଣଙ୍କ ସଙ୍କେତକୁ ଅନୁସରଣ କରି ଭୀମ ଜରାସନ୍ଧକୁ ଦୁଇଫାଳ କରି ଚିରି ଦେବାରୁ ସେ ମରିଗଲା ।

ତା'ପରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଆରମ୍ଭ ହେବା କଥା । ସେଥିରେ ସମସ୍ୟା ହେଲା କାହାକୁ ଯଜ୍ଞରେ ଅଗ୍ରସ୍ଥାନ ଦିଆଯିବ । ଭୀଷ୍ମଙ୍କ କଥା ଅନୁସାରେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁହିଁ ଅଗ୍ରସ୍ଥାନ ଦେଲେ । ସେଥିରେ ଶିଶୁପାଳ ଓ ତା' ଦଳର କେତେକ ରାଜା ଉତ୍ତ୍ୟକ୍ତ ହୋଇ ଉଠିଲେ ଓ ଶ୍ରୀକୃଷ୍ଣଙ୍କ ଅଗ୍ରାଧିକାରକୁ ଅସ୍ୱୀକାର କଲେ । ତା'ପରେ ଶିଶୁପାଳ ରାଜାମାନଙ୍କ ସଭା ମଧ୍ୟରେ ଉଠି ଶ୍ରୀକୃଷ୍ଣଙ୍କୁ ନାନା କଥା କହି ଅପମାନ ଦେଉଥା'ନ୍ତି । ଭୀମ ପ୍ରଭୃତି ପାଣ୍ଡବମାନେ ଶିଶୁପାଳକୁ ମାରିଦେବାପାଇଁ ଇଚ୍ଛା କରୁଥା'ନ୍ତି କିନ୍ତୁ ଶ୍ରୀକୃଷ୍ଣ ନିଜେ ସବୁ ସହ୍ୟ କରୁଥା'ନ୍ତି ଓ ଅନ୍ୟମାନଙ୍କୁ ସେଥିରୁ ନିବର୍ତ୍ତାଉଥା'ନ୍ତି । ଅବଶେଷରେ ଶିଶୁପାଳର ଦୋଷ ଯେତେବେଳେ ଏକଶହରୁ ଅଧିକ ହେଲା ସେତେବେଳେ ନୀରବରେ ଶ୍ରୀକୃଷ୍ଣଙ୍କ ଚକ୍ର ଯାଇ ତା'ର ଶିରଚ୍ଛେଦ କଲା । ତା'ପରେ ଶିଶୁପାଳ ଦେହରୁ ଏକ ଜ୍ୟୋତି ନିର୍ଗତ ହୋଇ ଶ୍ରୀକୃଷ୍ଣଙ୍କ ଦେହରେ ଲୀନ ହୋଇଗଲା । ଏହିପରି ଭାବରେ ଜୟ-



ବିଜୟଙ୍କର ତୃତୀୟ ଜନ୍ମ ସମାପ୍ତ ହେଲା । ସେ ମୁକ୍ତ ହୋଇ ପୁଣି ବୈକୁଣ୍ଠକୁ ଗମନ କଲେ ।

ପୂର୍ବ ପ୍ରତିଶ୍ରୁତି ଅନୁସାରେ ଦେବଶିଳ୍ପୀ ମୟ ଯୁଧିଷ୍ଠିରଙ୍କର ସଭାଗୃହ ନିର୍ମାଣ କଲେ । ସେ ନିର୍ମାଣ କୌଶଳ ଦେଖି ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ କେତେଥର ପାଣି ବୋଲି ଭାବି ଲୁଗା ଉଠାଇ ଚାଲିବାରୁ ସମସ୍ତେ ହସିଲେ; ପୁଣି ଥରେ ପାଣି ନାହିଁ ବୋଲି ଭାବି ଏକ ଜଳକୁଣ୍ଡରେ ସେ ଗଳି ପଡ଼ିଲେ । ଏପରି ଭ୍ରମ ଦେଖି ଦ୍ରୌପଦୀ ତାଙ୍କ ସଖୀମାନଙ୍କ ସହ ହସିପକାଇଥିଲେ । ତଦ୍ୱାରା ସେ ଆହୁରି ଅପମାନିତ ଅନୁଭବ କରିଥିଲେ । ସେତେବେଳେ ଶକୁନି ତାଙ୍କୁ ସାନ୍ତ୍ୱନା ଦେଇ କହିଥିଲେ କି ଏସବୁର ଉପଯୁକ୍ତ ପ୍ରତିଶୋଧ ନିଆ ହେବ, କିଛି ଚିନ୍ତା ନାହିଁ । କିନ୍ତୁ ସେଥିପାଇଁ ଯୁଧିଷ୍ଠିରଙ୍କୁ ପଶା ଖେଳିବା ପାଇଁ ନିମନ୍ତ୍ରଣ କରିବାକୁ ହେବ ।

ସୁଦାମା ଥିଲେ ଶ୍ରୀକୃଷ୍ଣଙ୍କର ବାଲ୍ୟସଖା । ଶ୍ରୀକୃଷ୍ଣ ଓ ବଳରାମ ମୁନି ସନ୍ଦୀପନଙ୍କ ପାଖରେ ବିଦ୍ୟାଭ୍ୟାସ କରୁଥିଲେ । ସେତେବେଳେହିଁ ସୁଦାମା ଥିଲେ ତାଙ୍କର ସହପାଠୀ । ଗୁରୁକୁଳ ବିଦ୍ୟା ଶେଷ ହେବା ପରେ ଯିଏ ଯାହାର କର୍ମ ନେଇ ନିଜ ନିଜ ସ୍ଥାନକୁ ବାହୁଡ଼ି ଗଲେ । ଅନେକ ଦିନ ପରେ ସୁଦାମା ତାଙ୍କର ଦାରିଦ୍ର୍ୟ ଓ ପରିବାର ନେଇ ବ୍ୟସ୍ତ ଥିବାବେଳେ ଥରେ ତାଙ୍କର ସ୍ତ୍ରୀ ତାଙ୍କୁ ମନେ ପକାଇ ଦେଲେ, "ତୁମର ସଖା ଦ୍ୱାରକାପତି ଶ୍ରୀକୃଷ୍ଣ । ତମେ ଥରେ ସେଇଠାକୁ ଯାଅ ନା ! ସେ ହୁଏତ ଏ ଭୟଙ୍କର ଦାରିଦ୍ର୍ୟକୁ ଘୁଞ୍ଚାଇବାରେ କିଛି ସାହାଯ୍ୟ କରିବେ ।"

"କିନ୍ତୁ ସେ କ'ଣ ମୋତେ ଚିହ୍ନିବେ ? କାହିଁ ଦ୍ୱାରକାପତି ଶ୍ରୀକୃଷ୍ଣ ଆଉ କାହିଁ ମୁଁ ଦରିଦ୍ର ବ୍ରାହ୍ମଣ । ଯଦି ବା ଯିବି କ'ଣ ଖାଲି ହାତରେ ଯିବି ?" କହିଲେ ସୁଦାମା ।

"ଆମର ଆଉ ବା ଅଛି କ'ଣ ତାଙ୍କୁ ଦେବା ଭଲ । ମୁଠାଏ ଖୁଦ ପଡ଼ିଛି ଭଜି ଦେଉଛି ନେଇଯାଅ ।" କହିଲେ ତାଙ୍କ ପତ୍ନୀ ।

ବହୁତ ଦ୍ୱନ୍ଦରେ ପଡ଼ି ଶେଷରେ ସେ ମନସ୍ଥ କଲେ ଦ୍ୱାରକା ଯିବେ। ଅନେକ ବାଟ ଚାଲି ଚାଲି କିଛିଦିନ ପରେ ଦ୍ୱାରକାରେ ପହଞ୍ଚିଲେ। ସେତେବେଳେ ଶ୍ରୀକୃଷ୍ଣ ତାଙ୍କର ଅଷ୍ଟ ପଟ୍ଟମହିଷୀଙ୍କ ସହିତ ଝୁଲରେ ବସି ଝୁଲୁଥିଲେ। ଦୂରରୁ ସୁଦାମାକୁ ଦେଖି ଦୌଡ଼ି ଆସି ତାଙ୍କୁ ଆଲିଙ୍ଗନ କରି ନିଜ ସିଂହାସନ ଉପରେ ବସାଇଲେ। ଆଠରାଣୀ ଆସି ତାଙ୍କ ପାଦ ଧୋଇ ଦେଲେ। ବାଲ୍ୟବନ୍ଧୁଙ୍କର ଅତିଥିସତ୍କାର ଦେଖି ଆଖିରୁ ତାଙ୍କର ଦରଦର ଲୁହ ବହିଯାଉଛି, ଆନନ୍ଦ ଓ କୃତଜ୍ଞତାରେ। ସେ ଖୁଦଭଜା ଶ୍ରୀକୃଷ୍ଣ ଅତି ଆନନ୍ଦରେ ସୁଦାମାଙ୍କଠାରୁ ଛଡ଼ାଇ ଖାଇଲେ।

ଏତେ ଆନନ୍ଦ, ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ସେ ନିଜର ଦାରିଦ୍ର୍ୟ ଓ ପରିବାର କଥା ବିଲକୁଲ ଭୁଲିଗଲେ। କିଛିଦିନ ରହି ସଖାଙ୍କଠାରୁ ବିଦାୟ ନେଇ ଗୃହାଭିମୁଖେ ଚାଲିଲେ। ବାଟଯାକ ଭାବୁଥା'ନ୍ତି "ଯେଉଁଥି-ପାଇଁ ଆସିଲି ତ କିଛି ସଖାଙ୍କୁ କହିଲି ନାହିଁ। ତାଙ୍କ ସେବା ଯତ୍ନ, ସ୍ନେହ, ଆଦର, ଭିତରେ ଏତେ ଛୋଟ କଥା ମୁଁ କିମିତି କହିଥା'ନ୍ତି। କିନ୍ତୁ ହାୟ ମୋର ପରିବାରବର୍ଗ ମୋତେ କେତେ ଆଶା କରି ଚାହିଁ ବସି ନଥିବେଟି।"

ଭାବି ଭାବି ସେ ଆସି ନିଜ ଗ୍ରାମରେ ପହଞ୍ଚିଲେ। କିନ୍ତୁ ଏ କ'ଣ? ସେ କ'ଣ ଦେଖୁଛନ୍ତି। ତାଙ୍କର ବଡ଼ କୋଠା ହୋଇଯାଇଛି। ପିଲା ଓ ସ୍ତ୍ରୀ ଦିବ୍ୟ ବସ୍ତ୍ର ଅଲଙ୍କାରରେ ଶୋଭିତ ହୋଇଛନ୍ତି। ଅନେକ ଦାସଦାସୀରେ ଘର ପୂର୍ଣ୍ଣ। ତାଙ୍କ ସ୍ତ୍ରୀ ମୁରୁକି ହସି କହିଲେ, "ତମେ କ'ଣ ଏତେ ଗୁଡ଼ାଏ ଏକାବେଳେକେ ତମ ସଖାଙ୍କୁ ମାଗିଲ?"

"ନା" ମୁଁ କିଛି ଜାଣେନାହିଁ, ମୁଁ କିଛି ମାଗିନାହିଁ। ସୁଦାମାଙ୍କ ଚକ୍ଷୁରୁ ଧାର ଧାର ଲୋତକ ବହି ଯାଉଛି। ଆଉ ତାଙ୍କ ସ୍ତ୍ରୀ ହସୁଛନ୍ତି। ତା'ପରେ ପରିବାରର ସମସ୍ତେ ମିଳି ଶ୍ରୀକୃଷ୍ଣଙ୍କୁ ସ୍ତୁତି କରିବାର ଲାଗିଲେ।





# ଅପୂର୍ବ ବିହଙ୍ଗ

ବଣ ଭିତର ଦେଇ ଯାଇଥିଲା ଏକ ଦୀର୍ଘ ପଥ । ସେ ପଥରେ ଯିବା ଆସିବା କରୁଥିବା ଯାତ୍ରୀମାନେ ମଧ୍ୟେ ମଧ୍ୟେ ଗୋଟିଏ ଅପୂର୍ବ ବିହଙ୍ଗ ଦେଖି ପାରୁଥିଲେ । ସେଭଳି ସୁନ୍ଦର ବିହଙ୍ଗ କେହି କେବେ ଦେଖି ନଥିଲେ ।

ଚେହେରା ତୁଳନାରେ ସେ ବିହଙ୍ଗର କଣ୍ଠସ୍ୱର ଥିଲା ବହୁତ ଅଧିକ ସୁନ୍ଦର । ଯିଏ ଥରେ ତା'ର ଗୀତ ଶୁଣିଛି, ସିଏ କଦାପି ତାହା ଭୁଲି ପାରେନାହିଁ । ବର୍ଷ ବର୍ଷ ଧରି ସ୍ମୃତିରେ ସେ ଗୀତର ଗୁଞ୍ଜରଣ ଧ୍ୱନିତ ହେଉଥାଏ ।

କ୍ରମେ କ୍ରମେ ସେ ପକ୍ଷୀ ଗୋଟାଏ ମଧୁର ଜନଶ୍ରୁତିରେ ପରିଣତ ହେଲା ।

ସେ ପକ୍ଷୀକୁ ଧରିବା ସକାଶେ କେତେଲୋକ ଚେଷ୍ଟା କରିଥାନ୍ତି । ସେମାନଙ୍କ ଭିତରେ ଥିଲେ କେତେ ସମ୍ଭ୍ରାନ୍ତ ଯୁବକ ଓ ରାଜପୁତ୍ର । କିନ୍ତୁ ଯିଏ ତାକୁ ଧରିବାକୁ ଯାଉଥିଲା, ସିଏ ଆଉ ଫେରିଆସୁ ନଥିଲା ।

ସେ ପକ୍ଷୀ କଥା ଶୁଣିଲେ ରାଜକୁମାରୀ । ସେ ରାଜାଙ୍କୁ କହିଲେ, "ବାପା, ଯିଏ ସେ ଅପୂର୍ବ ପକ୍ଷୀକୁ ଧରି ଆଣି ଥରେ ମୋତେ ଦେଖାଇ ପାରିବ, ମୁଁ ତାକୁ ବିଭା ହେବି ।"

ରାଜା ରାଜକୁମାରୀଙ୍କ ଏ ସିଦ୍ଧାନ୍ତ ରାଜ୍ୟରେ ଘୋଷଣା କରିଦେଲେ । ସେ ଘୋଷଣା କଥା ଶୁଣିଲେ ତିନି ବନ୍ଧୁ । ସେ ତିନିହେଁ ନଗରୀର ତିନି ବିଶିଷ୍ଟ ପରିବାରର ଯୁବକ । ତାଙ୍କ ଭିତରେ ଯିଏ ବଡ଼, ସିଏ କହିଲା, "ମୁଁ ମୋ ଭାଗ୍ୟ ପରୀକ୍ଷା ପାଇଁ ବଣ ଭିତରକୁ ଚାଲିଲି ।"

ସେ ଗଲା ସିନା, କିନ୍ତୁ ମାସଟିଏ ବିତିଯିବା ସତ୍ତ୍ୱେ ଫେରିଲା ନାହିଁ । ସେଇଠୁ ଦ୍ୱିତୀୟ ବନ୍ଧୁ କହିଲା, "ମୁଁ ଯାଇ ଭାଗ୍ୟ ପରୀକ୍ଷା କରେଁ । ଯଦି ରାଜକୁମାରୀଙ୍କୁ ବାହା ହେବା ସମ୍ଭବ



ହେବ, ତେବେ ତାହାଠୁଁ ବଳି ଆଶ୍ଚର୍ଯ୍ୟର କଥା ଆଉ କ'ଣ ହୋଇପାରେ ?"

ମାସ ଗୋଟାଏ ଚାଲିଗଲା । ସେବି ଆସିଲା ନାହିଁ । ସେଉଠୁ ତୃତୀୟ ବନ୍ଧୁ ହନିଫ୍ ବଣ ଭିତରକୁ ବାହାରିଲା । ତାକୁ ତା'ର ଶୁଭେଚ୍ଛୁମାନେ ବାରଣ କଲେ । କିନ୍ତୁ ସେ କହିଲା, "ସେ ବିହଙ୍ଗକୁ ଧରି ଆଣିବା ଅଥବା ରାଜକୁମାରୀଙ୍କୁ ବିଭା ହେବା ମୋର ଉଦ୍ଦେଶ୍ୟ ନୁହେଁ । ମୋର ଦୁଇ ବନ୍ଧୁଙ୍କ ସନ୍ଧାନହିଁ ମୋର ଉଦ୍ଦେଶ୍ୟ । ସେମାନଙ୍କୁ ଯଦି ଖୋଜି ଆଣି ପାରିବି, ମୋର ଶ୍ରମ ସାର୍ଥକ ହେବ ।"

ବଣ ଭିତରେ ହନିଫ୍ ଶୁଣିପାରିଲା ଅପୂର୍ବ ସ୍ୱର । ସେ ସ୍ୱର ଲକ୍ଷ୍ୟ କରି ସେ ଯାଇ ଗୋଟିଏ ଗଛଡାଳରେ ଅପୂର୍ବ ସୁନ୍ଦର ପକ୍ଷୀଟିଏ ବସିଥିବାର ଦେଖିଲା । ପକ୍ଷୀଟିର ସ୍ୱର ଖାଲି ମଧୁର ନୁହେଁ, ତାକୁ ଯିଏ ଶୁଣିବ, ସେ ତା'ର ପ୍ରତିଧ୍ୱନି ତୋଳିବାକୁ ମନ ବଳାଇବ ।

ପକ୍ଷୀର ସ୍ୱର ସହ ସ୍ୱର ମିଳାଇ ଗୀତ ଗାଇବା ପାଇଁ ହନିଫ୍‌ର ମଧ୍ୟ ତୀବ୍ର ଇଚ୍ଛା ହେଲା । କିନ୍ତୁ ହଠାତ୍ ତା' ଆଖି ପଡ଼ିଲା କେତୋଟି ମଣିଷ ମୂର୍ତ୍ତି ଉପରେ । ସେ ଅନୁମାନ କଲା କି ଯେଉଁମାନେ ପକ୍ଷୀକୁ ଧରିବାକୁ ଆସିଛନ୍ତି, ସେମାନେ ପଥର ପାଲଟି ଯାଇଛନ୍ତି । ପକ୍ଷୀ ବସିଥିବା ଡାଳର ଠିକ୍ ତଳେ ତା'ର ଦୁଇ ବନ୍ଧୁଙ୍କ ପଥର ମୂର୍ତ୍ତି ମଧ୍ୟ ସେ ଦେଖିଲା ।

ସେ ଯେପରି ପକ୍ଷୀର କଣ୍ଠସ୍ୱର ଶୁଣି ନିଜେ ଗୀତ ବୋଲିବାର ତୀବ୍ର ଇଚ୍ଛା ଅନୁଭବ କରୁଛି, ଅନ୍ୟମାନେ ବି ସେଇଆ କରିଥିବେ ଓ ଗୀତ ବୋଲିଥିବେ । ତାହାହିଁ ସେମାନଙ୍କୁ ପଥର ବନାଇଦେଇ ନାହିଁ ତ ? ମନରେ ଏହି ସନ୍ଦେହ ଉପୁଜିବାରୁ ହନିଫ୍ ନିଜ ଇଚ୍ଛା ଦମନ କରି ଚୁପ୍ ରହିଲା ଓ ଧିରେ ଧିରେ ପକ୍ଷୀ ଆଡ଼େ ଅଗ୍ରସର ହେଲା । ତା' ଅନୁମାନ ଥିଲା ଠିକ୍ । ସେ ଗୀତ ନ ବୋଲିବାରୁ ତା'ର କିଛି ଅନିଷ୍ଟ ହେଲା ନାହିଁ । ଖାଲି ସେତିକି ନୁହେଁ, ପକ୍ଷୀକୁ ଧରିବାକୁ ଚେଷ୍ଟା କରି ମଧ୍ୟ ସେ ସଫଳ ହେଲା ।



"ହେ ପକ୍ଷୀ! ମୋର ଦୁଇ ବନ୍ଧୁ ପଥର ବନି ଯାଇଛନ୍ତି। ଏମାନେ ପ୍ରାଣ ଫେରି ପାଇବେ ନାହିଁ?" ହନିଫ୍ ପଚାରିଲା।

"ଆଚ୍ଛା।" କହି ପକ୍ଷୀ ସେ ଦୁଇ ପଥର ମୂର୍ତ୍ତି ମୁଣ୍ଡ ଉପରେ ତିନି ତିନିଥର ଚକ୍ରାକାରେ ଉଡ଼ି ଆସିଲା। ସଙ୍ଗେ ସଙ୍ଗେ ଦୁଇ ମୂର୍ତ୍ତି ଜୀବନ୍ତ ହେଲେ।

"ପକ୍ଷୀ! ପୂର୍ବରୁ କେତେ ଲୋକ ଆସି ତୋତେ ଧରିବାକୁ ଚେଷ୍ଟା କରି ପଥର ବନି ଯାଇଛନ୍ତି। ସେମାନେ ପ୍ରାଣ ଫେରିପାଇବେ ନାହିଁ?" ହନିଫ୍ ପଚାରିଲା।

"ଦେଖିବା!" କହି ପକ୍ଷୀ ସେମାନଙ୍କ ମୁଣ୍ଡ ଉପରେ ମଧ୍ୟ ଚକ୍କର ଦେଲା ଓ ସେମାନେ ବି ପ୍ରାଣ ଫେରି ପାଇଲେ। ସେମାନେ ଯେତେବେଳେ ଜାଣିଲେ ଯେ ହନିଫ୍‌ହିଁ ସେମାନଙ୍କ ପ୍ରାଣଦାତା, ତା' ପ୍ରତି ଗଭୀର କୃତଜ୍ଞତା ଜଣାଇ ସେମାନେ ନିଜ ନିଜ ଘରକୁ ଚାଲିଗଲେ।

ହନିଫ୍ ପୁଣି ପକ୍ଷୀକୁ କହିଲା, "ତୋର ଦୟା ମୁଁ ଭୁଲିପାରିବି ନାହିଁ। ଆଉ ଗୋଟାଏ ନିବେଦନ ଅଛି। ମୋ ସହ ନଗରୀକୁ ଚାଲ। ରାଜକୁମାରୀ ତୋତେ ଦେଖିବାକୁ ବଡ଼ ଆଗ୍ରହୀ।"

"ହଉ ଚାଲ!" କହିଲା ପକ୍ଷୀ।

ହନିଫ୍ ସାଥିରେ ଗୋଟାଏ ପଞ୍ଜୁରି ଆଣିଥିଲା। ସେ ତା' ଦ୍ୱାର ଖୋଲିଦେବା ମାତ୍ରେ ପକ୍ଷୀ ତା' ଭିତରେ ପଶିଗଲା। କିନ୍ତୁ ହନିଫ୍‌ର କାନ ପାଖରେ କହିଲା, "ମୋ ଡାହାଣ ଗୋଡ଼ରେ ଯେଉଁ ମୁଦିଟି ଲାଗି ରହିଛି, ତା'କୁ କାଢ଼ି ନେଇ ନିଜ ଆଙ୍ଗୁଠିରେ ଲଗାଅ। କାମରେ ଆସିବ।"

ହନିଫ୍ ତାହାହିଁ କଲା।

ପକ୍ଷୀ ସହ ତିନିବନ୍ଧୁ ନଗରୀ ଅଭିମୁଖେ ଚାଲିଲେ। ବାଟରେ ରାତି ହେଲା। ସେମାନେ ଗୋଟାଏ ପାହାଡ଼ ପାଖରେ ବିଶ୍ରାମ ନେଲେ।

ମଝି ରାତିରେ ହନିଫ୍‌ର ଦୁଇ ତଥାକଥିତ ବନ୍ଧୁ ସେ ଗଭୀର ନିଦରେ ଶୋଇଥିବା ଅବସ୍ଥାରେ ତା' ହାତଗୋଡ଼ ବାନ୍ଧି ତାକୁ ଟେକି ନେଇ ପାହାଡ଼ ଉପରୁ ତଳକୁ ପକାଇ




ଦେଲେ । ସେ ତଳେ ପଥର ଉପରେ ପଡ଼ି ଚୁର୍‌ମାର୍ ହୋଇ ଯାଇଥାନ୍ତା । କିନ୍ତୁ ସେ ପିନ୍ଧିଥିବା ମୁଦିଟି ପଥର ଦେହରେ ଘସି ହୋଇଯିବା ମାତ୍ରେ ତହିଁରୁ ବାହାରି ପଡ଼ିଲା ଗୋଟାଏ ଜିନ୍ । ସେ ହନାଫ୍‌କୁ ଧରିନେଲା ଓ ଧିରେ ଧିରେ ତଳେ ଥୋଇ ଦେଲା ।

ହନାଫ୍‌ର ନିଦ ଭାଙ୍ଗି ଯାଇଥାଏ । "ତମେ କିଏ ?" ସେ ଭୟଭୀତ ହୋଇ ସେ ପ୍ରକାଣ୍ଡ ଦୈତ୍ୟକୁ ପଚାରିଲା ।

"ମୁଁ ଏ ମୁଦିର ଦୈତ୍ୟ । ପଥର ଦେହରେ ମୁଦିଟି ଘଷି ହୋଇଯିବାରୁ ମୁଁ ବାହାରି ପଡ଼ିଲି । ତମେ ତଳକୁ ଖସୁଥିବାର ଦେଖି ଧରିନେଲି । ବର୍ତ୍ତମାନ କ'ଣ କରିବାକୁ ହେବ କୁହ ।"

"ତମେ ବର୍ତ୍ତମାନ ଯାଅ । ମୋ ବନ୍ଧୁ-ମାନଙ୍କୁ ଖୋଜି ବାହାର କରେଁ । ତା'ପରେ ତମକୁ ପୁଣି ଡାକିବି ।" ହନାଫ୍ କହିଲା । ତା' ବନ୍ଧୁମାନେ ତାକୁ ସେମିତି ଅସୁବିଧାରେ ପକାଇଥିଲେ ବୋଲି ସେ କଳ୍ପନା କରି ପାରୁ ନଥିଲା ।

ଭୋର ହେବା ପରେ ବି ସେ ବନ୍ଧୁମାନଙ୍କୁ ଓ ପକ୍ଷୀକୁ ଖୋଜିଲା । ଆହୁରି କେତେ ସମୟ ଗଲା । ତା'ପରେ ଯାଇ ତା' ମନକୁ ଆସିଲା ଯେ ରାଜକୁମାରୀକୁ ବାହା ହେବା ଲୋଭରେ ସେମାନେ ତାକୁ ମାରି ପକାଇବାର ଚେଷ୍ଟା କରିଥିବେ ପରା !

ସେ ଦୈତ୍ୟକୁ ଡାକିଲା ଓ କହିଲା, "ମୋତେ ଆମ ରାଜାଙ୍କ ପ୍ରାସାଦରେ ପହଞ୍ଚାଇ ଦିଅ ।"

ସଙ୍ଗେ ସଙ୍ଗେ ଦୈତ୍ୟ ଘୋଡ଼ା ବନିଗଲା ଓ ହନାଫ୍‌କୁ ପିଠିରେ ବସାଇ ରାଜ-ପ୍ରାସାଦକୁ ନେଇଗଲା ।

ସେତେବେଳେ ରାଜାଙ୍କ ଆଗରେ ବିଷମ ସମସ୍ୟା । ହନାଫ୍‌ର ଦୁଇବନ୍ଧୁ ଭୀଷଣ ଝଗଡ଼ା କରୁଛନ୍ତି । ପ୍ରତ୍ୟେକେ ପକ୍ଷୀକୁ ଧରିଥିବାର ଦାବୀ କରୁଥାନ୍ତି । ରାଜା କାହାକୁ ଜାମାତା କରିବେ ସେକଥା ଠଉରାଇ ପାରୁ ନଥାନ୍ତି ।

"ହଜୁର୍, ଆପଣ ପକ୍ଷୀକୁ କାହିଁକି ପଚାରୁ ନାହାନ୍ତି ?" ହନାଫ୍ ପହଞ୍ଚି ଯାଇ କହିଲା । ତା'ର ଦୁଇ ବନ୍ଧୁଙ୍କ ମୁହଁ ଝାଉଁଳି ଗଲା ।

ସେତେବେଳକୁ ପକ୍ଷୀ ରାଜକୁମାରୀଙ୍କ ପାଖରେ ଅନ୍ତଃପୁରରେ ଥାଏ ।

"ପକ୍ଷୀ ତ କଥା କହୁ ନାହିଁ !" ରାଜା କହିଲେ ।

"ହଜୁର୍ ! ପକ୍ଷୀକୁ ମୋ ପାଖକୁ ଆଣନ୍ତୁ । ସେ କଥା କହିବ ।" ହନୀଫ୍ ଜଣାଇଲା ।

ପକ୍ଷୀ ଅନ୍ତଃପୁରରୁ ଆସିଲା । ହନୀଫ୍ ତାକୁ ପଚାରିଲା, "ପକ୍ଷୀ ! ତୋତେ କିଏ ଏଠାକୁ ଆସିବାକୁ ପ୍ରବର୍ତ୍ତାଇଲା ?"

"ମୋତେ ପ୍ରଥମେ ପଞ୍ଜୁରିରୁ ବାହାର କର । ତା'ପରେ କହିବ । ମୁଁ ଖାଲି ଥରେ ଏଠାକୁ ଆସି ବୁଲିଯିବା କଥା । ବରାବର ରହିବା କଥା ନୁହେଁ ।" ପକ୍ଷୀ କହିଲା ।

ନିଜ ବାହାଘର ପ୍ରଶ୍ନ ଥିବାରୁ ରାଜକୁମାରୀ ପକ୍ଷୀକୁ ମୁକୁଳାଇ ଦେଲେ । ସଙ୍ଗେ ସଙ୍ଗେ ପକ୍ଷୀ ହନୀଫ୍‌ର କାନ୍ଧରେ ବସି କହିଲା, "ତମେ ମୋତେ ଆଣିଲ, ତମେ !"

ସଙ୍ଗେ ସଙ୍ଗେ ଦୁଇ ବନ୍ଧୁ ଦୁଲିପଡ଼ି ପଳାଇ ଯିବାକୁ ଉଦ୍ୟତ ହେଲେ । କିନ୍ତୁ ରାଜାଙ୍କ ଦେହରକ୍ଷୀମାନେ ସେ ଦୁହିଁଙ୍କୁ ମାଡ଼ି ବସିଲେ ।

"ଏ ଦୁଇ ମିଥ୍ୟାବାଦୀ ଓ ପ୍ରବଞ୍ଚକଙ୍କ ମୁଣ୍ଡ କାଟି କର !" ରାଜା କ୍ରୁଦ୍ଧ ହୋଇ କହିଲେ ।

"ମହାରାଜ ! ମୁଁ ଏତେ କଷ୍ଟ କରି ବଣକୁ ଯାଇ ଏମାନଙ୍କ ପ୍ରାଣ ଫେରାଇ ଆଣିଲି । ପରେ ପରେ ଯଦି ଏମାନେ ପ୍ରାଣ ହରାଇବେ, ତାହା ମୋତେ ବହୁତ ଦୁଃଖ ଦେବ ।" ହନୀଫ୍ କହିଲା । ରାଜା ସେଉଠୁ ସେମାନଙ୍କୁ ଛାଡ଼ି ଦେଲେ ।

ରାଜକୁମାରୀଙ୍କ ସହ ହନୀଫ୍‌ର ବିବାହ ସମାରୋହରେ ହୋଇଗଲା । ରାଜାଙ୍କ ଅନ୍ତେ ହନୀଫ୍ ରାଜା ହେଲା । ବର୍ଷକରେ ଥରେ ସେ ସସ୍ତ୍ରୀକ ବଣ ଭିତରକୁ ଯାଇ ସେ ଅପୂର୍ବ ପକ୍ଷୀର ଗୀତ ଶୁଣେ । କୌଣସି ମତେ ସେ ଓ ରାଜକୁମାରୀ ନିଜ ନିଜର ଗୀତ ବୋଲିବାର ଇଚ୍ଛାକୁ ଦମନ କରି ରଖନ୍ତି ।



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



S. G. Seshagiri



V. Muthuraman

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁଲାଇ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ମେ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ମିଛମାୟା ଭବ ଏ ସଂସାର ସାର ସତ ଏକା ହରିନାମ !
ଦ୍ୱିତୀୟ ଚିତ୍ର : ମିଛ ନୁହେଁ ମୋର ପ୍ରେମର ସଂସାର ମିଛ ନୁହେଁ ମୋର ଶ୍ରମ !!
ପୁରସ୍କାର ବିଜୟୀ : ପ୍ରସନ୍ନ ମହାନ୍ତି, ଭୁବନେଶ୍ୱର
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. କାଳିଦାସ। ୨. ହୋମର। ୩. ଜନ୍ ମିଲ୍ଟନ୍। ୪. କୌଟିଲ୍ୟ।
୫. ସାର୍ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188. Arcot Road, Madras-600 026 (India). Controlling Editor: NAGI REDDI.

We're all in it together
for the fun of it,
for the taste of it!




CAMPA ORANGE FLAVOUR – IT'S THE FLAVOUR OF FUN!

OBM/5361

# ମାଲ୍‌ଟୋଭା ଦଳ –
# ସବୁବେଳେ ହୃଷ୍ଟପୁଷ୍ଟ, କଣ ଯେ କରିବେ କିଏ ଜାଣେ!

ଅଫୁରନ୍ତ ପ୍ରାଣଶକ୍ତିରେ ସବୁବେଳେ ଭରପୂର । ମଉଜ ମଜଲିସ, ଖେଳକୁଦରେ ପ୍ରାଣଖୋଲି ମିଶିଯାନ୍ତି । ତେଣୁ ପିଲାମାନଙ୍କର ଦରକାର ମାଲଟୋଭା । ସ୍ୱାଭାବିକ ଭାବେ ପାଚିଥିବା ଗହମ, ବାର୍ଲି, ଖାଣ୍ଟି ଦୁଧ, ପୁଷ୍ଟିକର କୋକୋ ଓ ଚିନିର ଶ୍ରେଷ୍ଠ ଗୁଣ ସବୁ ଏଥିରେ ମିଶିକରି ରହିଛି । ଦୁଧରେ ମିଶାଇଲେ ଏହା ଏକ ସୁସ୍ୱାଦୁ ପାନୀୟ ହୁଏ.....ପିଲାମାନଙ୍କର ଏହା ଏତେ ଉପକାର କରେ ଯେ ତାର କିଛି ପାରବାର ନାହିଁ । ତେଣୁ ସାଙ୍ଗେ ସାଙ୍ଗେ ପିଲାଙ୍କୁ ଦେବାକୁ ଆରମ୍ଭ କରନ୍ତୁ ମାଲଟୋଭା ।



**ସ୍ୱାଭାବିକ ଭାବେ ପାଚିଥିବା ଗହମ ଓ ବାର୍ଲିର ମଲ୍ଟ**

ପଂଜାବରୁ ଆସେ ଗହମ ଓ ବାର୍ଲି ଓ ତାହା ପୁଷ୍ଟିକର ମଲ୍ଟ ଭାବେ ତିଆରି କରାଯାଏ ମାଲଟୋଭା ପ୍ଲାଣ୍ଟରେ । ଅତ୍ୟାବଶ୍ୟକ ଖଣିଜସାର ଓ ଭିଟାମିନ 'B' ରେ ପରିପୂର୍ଣ୍ଣ ମାଲଟୋଭା ହେଉଛି ପୂର୍ବରୁ ସୁପାଚ୍ୟ-ଖାଦ୍ୟ ଓ ଏହା ସହଜରେ ଶରୀରରେ ମିଶିଯାଏ ।



**ବିଶୁଦ୍ଧ ଘନ ଦୁଗ୍ଧ**

ମାଲଟୋଭାରେ ଯେଉଁ ଦୁଗ୍ଧାଂଶ ଅଛି ତା ଆସେ ଆମର ନିଜର ଦୁଗ୍ଧ ସଂଗ୍ରହ କେନ୍ଦ୍ରମାନଙ୍କରୁ । ୧୦୦% ବିଶୁଦ୍ଧ, ୧୦୦% ପୁଷ୍ଟିକର ।

**ରୁଚିକର କୋକୋ ସ୍ୱାଦ**

ଆମେ ବ୍ୟବହାର କରୁ ବିଦେଶରୁ ଆମଦାନି ଉତ୍କୃଷ୍ଟ କୋକୋ — ତାର କାରଣ ଆମେ ଚାହୁଁ ଆପଣ ଉତ୍ତମ ସ୍ୱାଦ ପାନ୍ତୁ ଓ ଆପଣଙ୍କୁ ପୁଷ୍ଟିକର ଗୁଣ ମିଳୁ । କୋକୋ ହୃତଶକ୍ତି ଫେରଇଆଣେ ଓ କ୍ଳାନ୍ତି ମେଣ୍ଟାଇବା'ରେ ସାହାଯ୍ୟ କରେ ।

**ଶକ୍ତିବର୍ଦ୍ଧକ ଚିନି**

ବିଶୁଦ୍ଧ ଧଳା ଚିନି ହେଉଛି ଚିନି ଭିତରେ ଶ୍ରେଷ୍ଠ ଚିନି। ପିଲାମାନଙ୍କର ଆବଶ୍ୟକ ହେଉଥିବା ଅତିରିକ୍ତ ଶକ୍ତି ପାଇଁ ଏହା ଅତି ପ୍ରୟୋଜନ ।

**ବିଶେଷଭାବେ ଭିଟାମିନରେ ସମୃଦ୍ଧ**

ମାଲଟୋଭା ହେଉଛି ପ୍ରୋଟିନ, କାର୍ବୋହାଇଡ୍ରେଟ, ଭିଟାମିନ ଓ ଖଣିଜସାରର ଏକ ଅପୂର୍ବ ସମ୍ମିଶ୍ରଣ । ଅତିରିକ୍ତଭାବେ ଭିଟାମିନ A, ନିଆସିନ, ଭିଟାମିନ $B_1$ ଓ ଭିଟାମିନ $D_2$ ରେ ମଧ୍ୟ ଏହାକୁ ସମୃଦ୍ଧ କରାଯାଇଛି । ଏଥିରେ କୃତ୍ରିମ ସ୍ୱାଦ ନାହିଁ ।






ଜଗତଜିତ ଇଣ୍ଡଷ୍ଟ୍ରୀଜ ଲିମିଟେଡ
୧୯୮୧ ଓ ୧୯୮୨ ରେ ମୋଣ୍ଡେ (ୱାର୍ଲଡ) ସିଲେକସନ ସ୍ୱର୍ଣ୍ଣପଦକ ବିଜେତା।

## ଭିଟାମିନରେ ଭରପୁର ମାଲ୍‌ଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ

